# ଅଙ୍କା ବଙ୍କା ନଈ

(ଲଳିତ ଗଦ୍ୟ ସକଳନ)

ଲେଖକ

ଦାଶ ବେନହୁର

ପ୍ରଥମ ପ୍ରକାଶ

ଫେବୃଆରୀ, ୧୯୮୮

ପ୍ରକାଶକ

ଇଷ୍ଟର୍ଣ୍ଣ ମିଡ଼ିଆ ଲିଃ

ଏ-୬୨, ନୂଆପଲ୍ଲୀ,

ଭୁବନେଶ୍ୱର–୭୫୧୦୦୩

ପ୍ରଚ୍ଛଦ

ଛନ୍ଦାଚରଣ ଆଚାର୍ଯ୍ୟ

ମୁଦ୍ରଣ

ଚନ୍ଦନ ପବ୍ଲିକେଶନ୍ସ ପ୍ରା. ଲିଃ

ଶିଳ୍ପାଞ୍ଚଳ, ଭୁବନେଶ୍ୱର-୪

ମୂଲ୍ୟ :

ସୁଲଭ ସଂସରଣ

କୋଡ଼ିଏ ଟଙ୍କା

ଶୋଭନ ସଂସ୍କରଣ

ପଚିଶି ଟଙ୍କା

# ଉତ୍ସର୍ଗ

ସହରଟିଏ,
ସହର ମଝିରେ ବଡ଼ କୋଠା ।
କୋଠା କଡ଼ରେ ଝୁମ୍ପୁଡ଼ି ।
ସେଇ ଝୁମ୍ପୁଡ଼ିରେ ଛୋଟ ଲଙ୍ଗଳା ପିଲଟିଏ,
ଖେଳୁ ଖେଳୁ ହସେ, ଖାଉ ଖାଉ କାନ୍ଦେ ।
ମାଆ ତା'ର ବାପ କିଏ ଜାଣେନି ।
ତିନି ବରଷର ପିଲା ।
ନାଆଁ କ'ଣ ପଚାରିଲେ ମାଆ କହେ
ନାଆଁ କିଛି ଦେଇନି ।

× ×

ସେଇ ନାଆଁ ନଥିବା ତିନିବରଷିଆ ମଣିଷ ପିଲାକୁ

ଦାଶ ବେନହୁର

# ପ୍ରଥମ ବାଙ୍କ

ମଣିଷ ବିଚିତ୍ର ସୃଷ୍ଟି । ଏବଂ ତା'ର ଚରିତ୍ର ବ୍ୟାପକ । ଗୁଲିଚଳନ, ହାବଭାବ, ରୀତିନୀତି— ସବୁ ଜଣେ ମଣିଷଠାରୁ ଅନ୍ୟ ମଣିଷ ପାଖରେ ଅଲଗା ଯେମିତି । ସକାଳ ପାଇବା ପୂର୍ବରୁ ଏକ ନିର୍ଦ୍ଦିଷ୍ଟ ସମୟରେ ସବୁ କୁକୁଡ଼ାଙ୍କର ନିଦ ଭାଙ୍ଗିଯାଏ । ରାତି ହେଲେ ସବୁ ବାଦୁଡ଼ି କର୍ମ-ମୁଖର ହୁଅନ୍ତି । କିନ୍ତୁ ମଣିଷ, କୌଣସି ନିର୍ଦ୍ଦିଷ୍ଟ ଅଭ୍ୟାସକୁ ହୃଦୟଗତ କରେନି । ଦିନ ବାରଟା ପର୍ଯ୍ୟନ୍ତ ଅଧାଗତି ପରି ଶୋଇପାରେ କେହି ମଣିଷ । କେହି ମଣିଷ ମଧ୍ୟ ବର୍ଷ ବର୍ଷ ଧରି କୌଣସି ଗତିରେ ଶୋଇ ରହିବାପାଇଁ ପସନ୍ଦ କରି ନ ପାରେ ।

ମଣିଷ ଏକ ପ୍ରବହମାନ ନଈ । ଜଳ ତା'ର ବିଚିତ୍ରବର୍ଣ୍ଣା ଓ ବିସ୍ତୃତ । ଚିତ୍ରନଦୀ ଏଇ ମଣିଷ । ଯେତେ ମଣିଷ ସେତେ ବାଙ୍କ । ଯେତେ ବାଙ୍କ ସେତେ ଭିନ୍ନତା । ଭିନ୍ନତା, ମଣିଷର ରକ୍ତ ଅବା । ସେଇଥିପାଇଁତ ମଣିଷ ସୃଷ୍ଟି କରେ ସାହିତ୍ୟ ।

ଏଇ ଖିଆଲରେ ସେଇ ଭିନ୍ନତାଗୁଡ଼ିକୁ ଗୋଟିଏ ଗୋଟିଏ ବାଙ୍କ ମନେକରି ମୁଁ 'ସମ୍ବାଦ' ପୃଷ୍ଠାରେ ସ୍ଥାନିତ କରିଥିଲି । ଏଇ ଲଳିତ ଗଦ୍ୟ ଗୁଡ଼ିକ ନା ପ୍ରବନ୍ଧ ନାଁ ଗପ; କିନ୍ତୁ କେମିତି ଏକ ମଝାମଝି ।

ଆଶାକରେ ଏ ସଂକଳନଟି ପାଠକ ବନ୍ଧୁମାନଙ୍କୁ ଆମୋଦିତ କରିବ ।

**ଲେଖକ**

# ସୂଚିପତ୍ର

# ମରଦଙ୍କ ଫସଲ

**ଦାଢ଼ି** କାହିଁକି ରଖୁଛନ୍ତି ? ପ୍ରଶ୍ନକଲେ ଜଣେ ଚିହ୍ନା ପରିଚିତ ଲୋକ । ଉତ୍ତରରେ ଦାଢ଼ି ଉପରେ ଟିକେ ହାତ ବୁଲେଇ ଆଣି ସାମଲ ବାବୁ ବୁଝେଇ ଦେଲେ –"ଆଜ୍ଞା ! ଇଏ ହେଲା ମରଦଙ୍କ ଫସଲ । ଇଚ୍ଛା ହେଲାତ ଅମଳକର । ଇଚ୍ଛା ନ ହେଲାତ, ସେଇମିତି କ୍ଷେତରେ ପଡ଼ିଥାଉ ।"

କଥା ସରୁ ସରୁ ଉଭୟ ପ୍ରଶ୍ନକର୍ତ୍ତା ଏବଂ ଉତ୍ତରଦାତା ହସି ଉଠିଲେ ହୋ' ହୋ' ହୋଇ ।

ସତରେ କେତେ ବିଚିତ୍ର ପଦାର୍ଥ ଏ ଦାଢ଼ି !

କିଏ ଗୋଟିଏ ଛୋଟପିଲା ଥରେ ଆବ୍ରାହାମ୍ ଲିଙ୍କନ୍‌କୁ କହିଲା : ଅଙ୍କଲ୍ ! ଦାଢ଼ି ରଖନ୍ତୁ, ଆପଣଙ୍କୁ ଭଲ ମାନିବ । ବାସ୍ ସେଇଦିନୁ ଦାଢ଼ି ଆବୋରି ରହିଲା ତାଙ୍କର ଗଣ୍ଡ ଓ ଚିବୁକକୁ ।

ସେକସ୍‌ପିୟର ଠାଏଁ ତା'ଙ୍କ ନାଟକରେ ଲେଖୁଛନ୍ତି– ଦାଢ଼ି ହେଉଛି ମରଦଙ୍କ ଚିବୁକର ଅଳଙ୍କାର ।

ପୂର୍ବରୁ ନକରି ହଠାତ୍ କେହି ପ୍ରତିଦିନ ସଯତ୍ନରେ ଦାଢ଼ି ବାଗେଇବା ଆରମ୍ଭ କଲେ ବୁଝିବାକୁ ହେବ, ଲୋକଟି କେଉଁଠାରେ ନିଶ୍ଚିତ ପ୍ରେମରେ ପଡ଼ିଛି– ମତ ଦେଇଛନ୍ତି ଜଣେ ଔପନ୍ୟାସିକ ।

ଏଇଭଳି ଦାଢ଼ି, ପୁରୁଷ ଜୀବନ ସହ ଅଙ୍ଗାଙ୍ଗୀଭବେ ଜଡ଼ିତ । ବେଳେ ବେଳେ ସ୍ତ୍ରୀମାନଙ୍କ ସହ ମଧ୍ୟ । ନୋବେଲ ପୁରସ୍କାର ପ୍ରାପ୍ତ

ଇଦିସ୍ ସାହିତ୍ୟିକ ଆଇଜାକ୍ ବାସେଭିସ୍ ସିଙ୍ଗର 'ଦାଢ଼ି' ଶୀର୍ଷକ ଏକ ଗଳ୍ପରେ ଜଣେ ଲେଖକ, ଦାଢ଼ି ଉଠିଥିବା ଜଣେ ରମଣୀଙ୍କ ପ୍ରେମରେ ପଡ଼ିଥିବା କଥା ଲେଖିଛନ୍ତି । ଶୁଣାଯାଏ ଏ ଗଳ୍ପଟିରେ ତାଙ୍କ ନିଜ ଜୀବନର କିଛି ଛିଟିକା ରହିଯାଇଛି ।

ଅତୀତରେ ଭାରତର ମୁନି ଋଷିମାନେ ସମସ୍ତେ ରଖୁଥିଲେ ଦାଢ଼ି । ଦାଢ଼ି କର୍ତ୍ତନ କଲେ ସାଧନାରେ ବାଧା ସୃଷ୍ଟି ହୁଏ ବୋଧେ । ସାଧନା ବା ତପସ୍ୟା ପାଇଁ କ'ଣ ଦାଢ଼ି ନିହାତି ଆବଶ୍ୟକ ! ବିଭୁପ୍ରେମରେ ବା ସତ୍ୟ ସନ୍ଧାନରେ ସେମାନେ ଏତେଦୂର ନିମଗ୍ନ ରହୁଥିଲେ ଯେ ହୁଏତ ଦାଢ଼ି କାଟିବାରେ ସମୟ ନଷ୍ଟ କରିବାକୁ କେବେ ଚିନ୍ତା କରୁନଥିଲେ ।

ଯେମିତି ଆମର ବର୍ତ୍ତମାନର ଅଧିକାଂଶ ଆଧୁନିକ ସାଧକ–ବୈଜ୍ଞାନିକଗଣ ।

ହିନ୍ଦୁଧର୍ମର ତିନିଠାକୁର ବ୍ରହ୍ମା, ବିଷ୍ଣୁ , ମହେଶ୍ୱରଙ୍କ ଭିତରୁ କେବଳ ବ୍ରହ୍ମାଙ୍କର ଦାଢ଼ି ଥିବାର ଦେଖାଯାଏ । କିନ୍ତୁ ବିଷ୍ଣୁ ଏବଂ ମହେଶ୍ୱର ଦାଢ଼ି କାହିଁକି କାଟିଥାଆନ୍ତି ସେ କଥାର ଉତ୍ତର କିଏ ଦେବ ? କେଉଁ ଚିତ୍ରଶିଳ୍ପୀ ସେମାନଙ୍କୁ ପ୍ରଥମେ ବିନାଦାଢ଼ିରେ ଦେଖିଥିଲା କେଜାଣି !

ଚକାଡୋଳା ଜଗନ୍ନାଥଙ୍କର ଲମ୍ବା ଦାଢ଼ି ଥିଲେ ସେ କିପରି ଦେଖା-ଯାଆନ୍ତେ ସେକଥା ପାଠକେ ଚିନ୍ତାକରନ୍ତୁ । କଳାଶ୍ରୀମୁଖକୁ ଯଦି ଘନକଳା ଶ୍ମଶ୍ରୁ ଘୋଟିଥାଆନ୍ତା ତେବେ ଆଉ ରଙ୍ଗାଧର ହୁଏତ ଦୃଶ୍ୟ ହୁଅନ୍ତା ନାହିଁ ।

ମହୁଗଛ, ମହୁବାକସରେ କଢଯାଇପାରେ । ମାତ୍ର ନିଜ ଦାଢ଼ିରେ ମହୁଗଛ କରଇ ବିଶ୍ୱ ରେକର୍ଡ଼ ସୃଷ୍ଟି କରିଥିବା ଜଣେ ଭଦ୍ରଲୋକଙ୍କ ଫଟୋ ଦେଖିଛନ୍ତି ତ ?

ଦାଢ଼ିକୁ ସେହିଭଳି ବଢ଼ିବା ପାଇଁ ଛାଡ଼ିଦେଲେ ତାହା ହୁଏ ସାତ୍ତ୍ୱିକ ଦାଢ଼ି । ତା' ଦେହରେ କତୁରି କିମ୍ବା କ୍ଷୁର ବାଜିଲେ ସେ ହୁଏ ଫେଶନ ଦାଢ଼ି । ଏବେ ଏଥିରେ ସଂଯୋଜିତ ହୋଇଛି ଫ୍ରେଞ୍ଚକଟ୍ ଦାଢ଼ି ।

କିନ୍ତୁ ମନେ ରଖିବାକୁ ହବ ଅଶେଷ ଯତ୍ନରେ ଏବଂ ବିଭିନ୍ନ ବୈଚିତ୍ର୍ୟମୟ ଭଙ୍ଗୀର ଦାଢ଼ି ପାଳନ ଦିଗରେ ମୁସଲମାନ ଭାଇମାନେ ହିଁ ପ୍ରଥମ ସ୍ଥାନ ଅଧିକାର କରିବେ ।

ପୁରୁଷ ମୁହଁରେ ମୋଟେ ଦାଢ଼ି ନ ଉଠିଲେ କ୍ଷତି କ'ଣ ? ଅବଶ୍ୟ ଦାଢ଼ି ଉଠୁନଥିବା ବୟସମାନଙ୍କୁ ଅଣପୁରୁଷା ବୋଲି କେହି କେହି କହିବାର ସ୍ୱାଧୀନତା ନେଇଥାଆନ୍ତି । ତାହା କ'ଣ ପ୍ରକୃତରେ ସତ !

ଆଲେକ୍‌ଜାଣ୍ଡରଙ୍କ ପୂର୍ବରୁ ଗ୍ରୀସରେ ଦାଢ଼ି ଖିଆର ହେବା ଏକ ପ୍ରକାର ନିନ୍ଦନୀୟ କାମ ଥିଲା । ଏପରିକି ରୋଡେଜ୍ ଦ୍ୱୀପରେ ତାହା ଥିଲା

ବେଆଇନ୍ । କିନ୍ତୁ ଯୁଦ୍ଧ ସମୟରେ କାଳେ ଶତ୍ରୁର ମୁଠାରେ ଦାଢ଼ି ପଡ଼ିଯିବ ସେଥିପାଇଁ ଆଲେକ୍‌ଜାଣ୍ଡର ପ୍ରଥମେ ଦାଢ଼ି ଖିଅର ହେବା ଆରମ୍ଭ କରିଥିଲେ । ତାଙ୍କୁ ଦେଖି ସାରା ଇଉରୋପରେ ଦାଢ଼ି ଖିଅର ଏକ ଫେସନରେ ପରିଣତ ହେଲା । ତା'ଙ୍କ ଭଳି ହୀରୋଙ୍କୁ ଅନୁକରଣ ନକରିବ କିଏ ? ଦାଢ଼ି କାଟିବା ମାଇଚିଆର ଲକ୍ଷଣ ବୋଲି ଯେଉଁ ପୁରୁଣା ମତଟି ଥିଲା, ତାହା ବ୍ୟାହତ ହେଲା ଆଲେକ୍‌ଜାଣ୍ଡରଙ୍କ ପାଇଁ । କାରଣ ଦାଢ଼ି ନଥିବା ଯୋଗୁଁ ଯଦି ଆଲେକ୍‌ଜାଣ୍ଡର ମାଇଚିଆ ହୁଅନ୍ତି, ତେବେ ମାଇଚିଆ ଉପାଧି ପାଇବା ଯେକୌଣସି ପୁରୁଷ ପୁଙ୍ଗବ ପକ୍ଷରେ ଗୌରବର ବିଷୟ ହୁଅନ୍ତାନାହିଁ କି ?

ପୁଣି କୁହାଯାଏ ଦାଢ଼ି ରଖିଲେ ଦୃଷ୍ଟିଶକ୍ତି ବଢ଼େ ଏବଂ ଆତ୍ମସଂଯମ ବୃଦ୍ଧିପାଏ । ତେବେ ଦାଢ଼ି ବଢ଼େଇଲେ କ୍ଷତି କ'ଣ ? ଓଲଟି ଖର୍ଚ୍ଚ ବଞ୍ଚିଯିବ ।

୧୬-୧୦-୮୪

# କିଏ ତୁମେ ନକଲଧାରୀ

ମଣିଷଙ୍କ ଭିତରେ ସବୁଠାରୁ ବଡ଼ ମୂର୍ଖ କିଏ ?

ଅତୀତରେ ବିଚରା ତନ୍ତୀଟିକୁ ଏ ଭର ବହନ କରିବାକୁ ପଡ଼ୁଥିଲା । ତା'ପରକୁ ଥିଲା ଗଉଡ଼ । ତେଣୁ କଥା ଥିଲା– ତନ୍ତୀ ସଦାକାଳେ, ଗଉଡ଼ ଅଣି । ସେଇଥିପାଇଁ ସଂସ୍କୃତ ଆଖ୍ୟାନରେ ତନ୍ତୀଭଇ ନିଜର ଉନ୍ନତି ପାଇଁ ବର ମାଗିବାକୁ ଯାଇ ମାଗିଥିଲା : ଦୁଇମୁଣ୍ଡ, ଚାରିହାତ ।

ମାତ୍ର ପ୍ରଶ୍ନ ହେଉଛି କେଉଁ ବଡ଼ପଣ୍ଡାମାନେ ଏତେ ସହଜରେ ଜାଣିଦେଲେ ଯେ,– ଯେତେକ ତନ୍ତୀ କୁଳରେ ଜନ୍ମ ନିଅନ୍ତି, ସବୁ ଗୁଡ଼ାକ ମୂର୍ଖ ବୋଲି ! ଜାଣିରଖିବା ଉଚିତ, ଗଙ୍ଗାଧର ମେହେର ଥିଲେ ତନ୍ତୀ ।

ମଣିଷର ବୁଦ୍ଧି ମାପିବା ପାଇଁ ବିଭିନ୍ନ ସିଦ୍ଧାନ୍ତଠାରୁ ଆରମ୍ଭ କରି ଯନ୍ତ୍ର ପର୍ଯ୍ୟନ୍ତ ବାହାରିବା କିଛି ବିଚିତ୍ର ନୁହେଁ । ହେଲେ କେଉଁ ପଦ୍ଧତିଟି ସଠିକ୍ ସେକଥା କିଏ କହିବ ? ଯିଏ ବୁଦ୍ଧିମାନ ଲୋକ ସେ ଯେ ସବୁ କ୍ଷେତ୍ରରେ ବୁଦ୍ଧିମତାର ପରିଚୟ ଦେବ ସେକଥା ମଧ୍ୟ କହିବା କଠିନ । ଗଣିତକୁ ଡରି ସ୍କୁଲକୁ ଯାଉ ନଥିବା ପିଲା ହୁଏତ ଦିନେ ପୃଥିବୀର ସର୍ବଶ୍ରେଷ୍ଠ ସାହିତ୍ୟିକ ହୋଇପାରେ । ସେଇଭଳି ଚିଠି ଖଣ୍ଡିଏ ଲେଖି ଜାଣୁ ନଥିବା ଲୋକ ମଧ୍ୟ ସାଜିପାରେ ବଡ଼ ଏକ ବୈଜ୍ଞାନିକ ।

କୌଣସି ପରୀକ୍ଷାରେ ଫେଲ୍ ହେବାପରେ ପିତାମାତାଙ୍କଠାରୁ ଗାଳି-ଶୁଣି ଘରଛାଡ଼ି ପଳାଇବା ବା ଆତ୍ମହତ୍ୟା କରିଦେବାଭଳି ଛୋଟ ଛୋଟ କିଶୋରମାନଙ୍କର ଉଦାହରଣ, ମୋଟେ ବିରଳ ନୁହେଁ ଏ ଦେଶରେ ।

ପିଲଟି ହୁଏତ ଭଲ ଖେଳୁଥିବ, ଭଲ ଚିତ୍ର ଆଙ୍କୁଥିବ, ଭଲ ଗୀତ ଗାଇ ପାରୁଥିବ, ଭଲ ବାଜା ବଜାଇ ପାରୁଥିବ; ମାତ୍ର ପାରମ୍ପରିକ ଗଣିତ, ସାହିତ୍ୟ, ଇତିହାସ ଆଦିରେ ଯଦି ସେ ଫେଲ୍ ମାରିଗଲା ତେବେ ତମା-ପଟାରେ ଅକ୍ଷର ପିଟି ହୋଇଯିବ—ଏଇଟା ନିପଟ ମୂର୍ଖଟାଏ । ଯା' ଦେଇ ଖଡ଼ା ସିଝୁବନି । ଗଧ କାହାଙ୍କା !

ପିଲଟାଏ ଗଧ ବୋଲି କେତେ ସହଜରେ ସତେ ଜାଣି ଦିଅନ୍ତି ଏ ପୁରୁଖା ମଣିଷମାନେ ! ଗଧ ପିଲମାନଙ୍କ ଭବିଷ୍ୟତ ନେଇ ଅନେକ ଦେଶରେ ସରକାରମାନେ ମଧ୍ୟ ଖୁବ୍ ବ୍ୟସ୍ତ । କିନ୍ତୁ କଥା ହେଉଛି, କେଉଁ ମଣିଷଟି ଗଧ ସେକଥା କିଏ ନିର୍ଦ୍ଧାରଣ କରିବ ? ଅଥବା ଜଣେ କୌଣସି ଏକ ବିଷୟରେ ନିପଟ୍ ବୋଲି ପ୍ରମାଣିତ ହେଲେ ଏହା ଭବିବା କ'ଣ ଯଥାର୍ଥ ଯେ, ଉକ୍ତ ମଣିଷଟି ପୃଥିବୀର ଅନ୍ୟ ସମସ୍ତ ବିଷୟରେ ମଧ୍ୟ ଅସଫଳ ପ୍ରମାଣିତ ହେବ ?

କୌଣସି ନିର୍ଦ୍ଦିଷ୍ଟ ବିଭଗରେ କେହି ହୁଏତ ଅସଫଳ ହୋଇପାରେ କିନ୍ତୁ ସାମଗ୍ରିକ ଭବେ ସବୁ ଦିଗରୁ କେହି ନିର୍ବୋଧ କି ?

ଏଠାରେ ଦୁଇଗୋଟି ଉଦାହରଣ ନିଆଯାଇପାରେ । ଦୁଇଟିଯାକ ଦୁଇଟି ସ୍କୁଲ ଛାତ୍ରଙ୍କର ଉତ୍ତର ।

ବିଜ୍ଞାନ ବିଷୟର ପ୍ରଥମ ପ୍ରଶ୍ନ— "ଆଲୋକ ସରଳରେଖାରେ ଗତିକରେ, ବୁଝାଇ ଦିଅ !"

କିଏ କ'ଣ କେତେ କେତେ ଲେଖିଲେ । ମାତ୍ର ଦୀନନାଥ କେବଳ ଚିତ୍ରଟିଏ ଆଙ୍କିଦେଲା । ଗୋଟିଏ ଶୋଇବା ଘରର ଚିତ୍ର । ଘର ଭିତରଟି ବେଶ୍ ସୁନ୍ଦର । ଟେବୁଲ୍ ଉପରେ ଟାଇମ୍‌ପିସ୍, ଫୁଲଦାନୀରେ ରଜନୀଗନ୍ଧା, ଘର ମଝିରେ ସୁନ୍ଦର ଖଟ । ତା' ଉପରେ ଶୋଇଛି ସ୍କୁଲପଢ଼ା ବୟସର ପିଲଟିଏ । ଝରକା ସେପଟେ ଦିଶୁଛି ଗଛର ଡାଳ । ଡାଳରେ ବସିଛି ଛୋଟ ଚଢ଼େଇଟିଏ, ଗୀତ ଗାଇବା ଭଙ୍ଗୀରେ । ତାଙ୍କ ଆଢ଼ୁଆଳରେ ସେ-କଢ଼େ, ଆକାଶରେ ସୂର୍ଯ୍ୟ । ସେଇଠାରୁ ଝରି ଆସୁଛି ଆଲୋକ ସରଳରେଖାରେ ।

ଏଇଥିଲା ଉପରୋକ୍ତ ପ୍ରଶ୍ନପାଇଁ ଦୀନନାଥର ଉତ୍ତର ।

ଆଉ ଗୋଟିଏ ପ୍ରଶ୍ନ : "ଦିଆସିଲି କାଠି ଜଳ ଭର୍ତ୍ତି କାଚ ଗିଲାସରେ ବୁଡ଼ାଇଲେ, ବକ୍ର ଦେଖାଯାଏ କାହିଁକି ?"

କେତେ ଭଲ ଭଲ ପଢ଼ୁଆପିଲା, ପ୍ରାଞ୍ଜଳ ଭବରେ ବୁଝାଇ ଲେଖିଲେ ଏ ତତ୍ତ୍ୱଟିକୁ । ଅଥଚ ରଙ୍କମଣି ଉତ୍ତର ଦେଲା ଭିନ୍ନ ବାଗରେ ।

ତା'ର ଉତ୍ତର: "ଅଗ୍ନି ସର୍ବଭକ୍ଷ । ଏ ମର୍ତ୍ତ୍ୟଭୂମିରେ ଏଭଳି କୌଣସି ପଦାର୍ଥ ନାହିଁ ଭସ୍ମୀଭୂତ ନହେବ ଅଗ୍ନିର ସମ୍ମୁଖରେ । ବୃକ୍ଷଲତା, ମାଂସ, ବସ୍ତ୍ର, ସଜୀବ ନିର୍ଜୀବ, ସବୁକିଛି ଧ୍ୱଂସ ହୋଇଯାଏ ଅଗ୍ନିର କରାଳ ମୁଖବ୍ୟାଦାନ ବେଳେ । ମାତ୍ର ଜଳ ସମ୍ମୁଖରେ ଅଗ୍ନିର ସତ୍ତା ଅତୀବ ଦୟନୀୟ । ଜଳର ସ୍ପର୍ଶ ମାତ୍ରେ ହିଁ କବଳିତ ହୋଇଯାଏ ଅଗ୍ନି, ନିର୍ବାପିତ ହୁଏ ଅନାୟାସରେ । ତେଣୁ ଜଳ ହିଁ ମହାନ୍, ପରମ ପରାକ୍ରମଶାଳୀ । ପ୍ରଚଣ୍ଡ ବାଡ଼ବାନଳକୁ ଯଦି ଜଳଧାର ନିର୍ବାପିତ କରିଦିଏ କ୍ଷଣକରେ, ତେବେ ସାମାନ୍ୟ ଦିଆସିଲି କାଠି ? ଜଳରେ ପ୍ରବେଶ ମାତ୍ରେ ନଗନ୍ୟ ଦିଆସିଲି କାଠି, ବଳ ନ ହୋଇଯାଇ ଆଉ କ'ଣ ସଳଖ ହୋଇ ରହିବ ?"– ଓଜନ ଦେଇ ଉତ୍ତର କରିଥିଲା ରଙ୍କମଣି ।

ଏଠାରେ ପ୍ରଶ୍ନଗୁଡ଼ିକ ବୈଜ୍ଞାନିକ ଦୃଷ୍ଟି-କୋଣରୁ ଉତ୍ତର ଦିଆଯାଇ ପାରିନାହିଁ । ତେଣୁ ଦୀନନାଥ ଏବଂ ରଙ୍କମଣି ଅସଫଳ । ମାତ୍ର ସାମଗ୍ରିକ ଭାବେ ଗ୍ରହଣ କଲେ ଏ ଦୁଇଜଣଙ୍କୁ ମୂର୍ଖ ବୋଲି କହି ଅବହେଳିତ କରାଯାଇ ପାରିବ କି ?

ବୟସ୍କ ମଣିଷଟି ନିକିତି ଧରିବସେ, ଅଳ୍ପ ବୟସଟିକୁ ତଉଲିବାକୁ । ବଟକରାପରେ ବଟକରା ସଜାଡ଼ି ଧରେ । କିନ୍ତୁ କିଏ ଠିକ୍ କରିବ କେଉଁ ବଟକରା କାହାପାଇଁ ପ୍ରଯୁଜ୍ୟ ?

୩୧-୧୦-୮୪

## ପକ୍ଷୀ ସମ୍ବାଦ

"ଶୀଘ୍ର ହେଉ ବା ବିଳମ୍ବରେ ହେଉ, ମଣିଷ ଏତେ ଦିନକେ ବୁଝିଗଲଣି ଯେ, ସବୁ ମଣିଷ ସମାନ । ଜଳ୍ପ ଗୋଗ ଏକ । ସମସ୍ତଙ୍କ ଧମନୀରେ ସେଇ ରକ୍ତ । ସଭିଙ୍କ ଦେହରେ ସେଇ ମାଂସ । ସକଳ ଦେହେ ଭଗବାନ । ତେଣୁ ଛୁଆଁ ଅଛୁଆଁ ଭେଦଭାବ, ବର୍ଣ୍ଣବୈଷମ୍ୟ, ସବୁ ଚରମ ମୂର୍ଖତାର ଯୁକ୍ତି । ମଣିଷ ତ ମଣିଷ, ପୁଣି ଫରକ ଗୋଟାଏ କ'ଣ ?"

ଏଇ କଥାଟିକୁ ଖଗଦିନ ଯୋଗୁଁ ଖୁବ୍ ଶୋଷେଇ ଯାଇଥିବା ଏମ୍.ଏଲ୍.ଏ. ନୀଳାମ୍ବରବାବୁ କୌଣସି ଏକ ପାନୀୟ ଗଳାଧଃକରଣ କରୁ କରୁ ଆପଣା ସରକାରୀ ବଙ୍ଗଳା ଅଗଣାରେ ଏକତ୍ରିତ ହୋଇଥିବା ଅନୁଗତମାନଙ୍କୁ ବକ୍ତୃତା କରି ବୁଝାଉଥିଲେ ।

କଥା କହିଲାବେଳେ ସେ ଯେ ଉତ୍ତେଜିତ ହୋଇ ପଡ଼ୁଥିଲେ ସେ କଥା କହିବା ଅମୂଳକ, କାରଣ ବକ୍ତୃତା ମାତ୍ରେଇ ଉତ୍ତେଜନା । ପୁଣି ସମାନତା ଉପରେ କଥାଟି କୁହାଗଲା ବେଳେ ପ୍ରତିଟି ଶବ୍ଦ ତ ଉତ୍ତେଜନା ପୂର୍ଣ୍ଣ, ଆଉ ଏଥିରେ ନିଜେ ବକ୍ତା ଉତ୍ତେଜିତ ହେବାର କ'ଣ ଅଛି ।

ନୀଳାମ୍ବରବାବୁ ବୁଝାଉଥିଲେ—ବୁଝିଲେ ! ମଣିଷ ବନ୍ଧନହୀନଭାବେ ଜନ୍ମ ନେଇଚି ଏ ପୃଥିବୀରେ; କିନ୍ତୁ ସବୁଠାରେ ସେ ଶୃଙ୍ଖଳା ପାଶରେ ବନ୍ଦୀ । ସେ ଶୃଙ୍ଖଳ କ'ଣ ଜାଣନ୍ତି ? ଏଇ ଅସମାନତାର ଶୃଙ୍ଖଳ ।

ମଣିଷକୁ ମଣିଷ ନ୍ୟୂନ ବା ହୀନ ଭବିବାର ଅନ୍ଧ ବୁଝାମଣା ହିଁ ଏ ଶୃଙ୍ଖଳର ମୂଳଭିତ୍ତି । ଏହା ଏକ ବ୍ୟାଧି । ଜଘନ୍ୟ ଅପରାଧ । ଏଇ ଅସମାନତାକୁ ଦୂର ନ କଲେ ମାନବ ସମାଜର ପରିତ୍ରାଣ ନାହିଁ ।

ସାରା ପୃଥିବୀରେ ଗୋଟିଏ ମାତ୍ର ସ୍ଲୋଗାନକୁ ଈଶ୍ୱରଙ୍କ ନାମ ପରି ପବିତ୍ର କରିଦେବାକୁ ପଡ଼ିବ ଯେ, "ସମସ୍ତେ ସମାନ ।" ମଣିଷ ମଣିଷ ଭିତରେ ପାର୍ଥକ୍ୟ ରହି ନ ପାରେ । ଯାହା କିଛି ପାର୍ଥକ୍ୟ କେବଳ କର୍ମରେ । ଜଣ ଜଣକର ସାମର୍ଥ୍ୟରେ । ମଣିଷ ସହ ମଣିଷର ସମ୍ପର୍କ କେବଳ ସ୍ନେହ ଓ ସହାନୁଭୂତି ।

ଏଇଭଳି ମାନବିକ ସମାନତା ଉପରେ ବକ୍ତୃତା ଚଳାଇଥିଲେ ନୀଳାମ୍ବର ବାବୁ । ସମସ୍ତେ ଜାଣନ୍ତି, ସେ ଖୁବ୍ ନିଦାଲୋକ । ହାଡ଼ ଭିତରର ମଞ୍ଜଟିକୁ ବୁଝନ୍ତି ସେ । ଯାହା କହିବେ ସେଥିରେ ତାଙ୍କର ଅଗାଧ ବିଶ୍ୱାସ ନ ଥିଲେ କହିବେ ନାହିଁ ।

ସମସ୍ତେ ଯେ ସମାନ ଏଇଟା ତାଙ୍କର ମଞ୍ଜ ଅନୁଭୂତି ।

ନୀଳାମ୍ବରବାବୁଙ୍କ କଥାକୁ ସ୍ୱୀକାର କରି, ସ୍ୱାଗତ ଜଣେଇ ଆଉ-ଜଣେ ନୀଳାମ୍ବରନୁଗତ ଶ୍ରୋତା ଉଠିପଡ଼ି କହିଲେ– "ବନ୍ଧୁଗଣ ! କେବଳ ମଣିଷ ନୁହନ୍ତି, ସବୁ ପଶୁ ମଧ୍ୟ ସମାନ । ସବୁ ବୃକ୍ଷଲତା ସମାନ । ମୋଟ ଉପରେ ସବୁ ପ୍ରାଣୀ ସମାନ । ଈଶ୍ୱରଙ୍କ ସୃଷ୍ଟିରେ କେହି ସାନ କେହି ବଡ଼ ନୁହନ୍ତି । ସଭିଏଁ ସମାନ । ନୀଳାମ୍ବରବାବୁ ଯେ ସମାନତାର ମହାମନ୍ତ୍ର ଉଚ୍ଚାରଣ କରିଛନ୍ତି, ତାହା ଆମ ସମସ୍ତଙ୍କର ଧ୍ୟେୟ ହେବା ଉଚିତ ।"

"ଦେଖୁନାହାନ୍ତି ଆମ ଦେହରେ ଯେଭଳି ଜୀବନ ଅଛି, ସେଇ-ଭଳି ବୃକ୍ଷଲତା, ପଶୁପକ୍ଷୀ, ସକଳ ଦେହରେ ସେଇ ଦିବ୍ୟ ସତ୍ତାଟି ବିରାଜମାନ । ମନେରଖନ୍ତୁ ଆମେ ସମସ୍ତେ ଆୟୁଷ ନାମକ ଏକ ବନ୍ଧନୀ ଭିତରେ ଆବଦ୍ଧ । କିଏ ବଡ଼ କିଏ ସାନ ? ସମସ୍ତେ ସମାନ, ବୋଇଲ ପରା 'ଜଣେ ହେଁ ଏଥୁ କେହି ନାହିଁ ଅମର ।' ଆଉ ବଡ଼ କିଏ ?"

ଶ୍ରୋତୃବର୍ଗ ପ୍ରକୃତରେ ଦୃଢ଼ଭାବେ ବୁଝିଯାଇଥିଲେ ଯେ– ସମସ୍ତେ ସମାନ । କେବଳ କର୍ମରେ ହିଁ ଫରକ । ତେଣୁ ଉଚ୍ଚ ହେବାପାଇଁ ହେଲେ, ଉଚ୍ଚ କର୍ମ କରିବା ଆବଶ୍ୟକ ।

ଏଇ କଥାଟିକୁ ନିବିଡ଼ ଚିତ୍ତରେ ଏମ୍.ଏଲ୍.ଏ.ଙ୍କ ପ୍ରାଙ୍ଗଣ ଭିତରେ ଏକ ଡାବଲ ଉପରେ ବସି ଶୁଣୁଥିଲେ ଦୁଇଟି ପୋଷା ପକ୍ଷୀ । ଗୋଟିଏ ମୟୂର ଅନ୍ୟଟି କୁକ୍କୁଟ । ଆଲୋଚନା ଶୁଣି ପକ୍ଷୀ ଦୁଇଟି ମଧ୍ୟ ଯେ ବିହ୍ୱଳିତ ହୋଇ ପଡ଼ିଥିଲେ ତାହା କହିବା ଦ୍ୱିରୁକ୍ତି ମାତ୍ର । କିନ୍ତୁ ମଧ୍ୟେ

ମଧ୍ୟେ ମୟୂରଟି ଅଧିକ ଆତ୍ମସନ୍ତୋଷ ଲଭକଲାପରି ମୁଖ ପ୍ରସାରଣ କରୁଥିଲା କେବଳ । ଏତିକିବେଳେ କୁକ୍‌କୁଟଟି ମୟୂରକୁ କହିଲା— ଭଦ୍ରେ ! ଏ ମଣିଷଗୁଡ଼ିକ ବଡ଼ ଧୂର୍ତ୍ତ । ନିଜର ସ୍ୱାର୍ଥପାଇଁ ଏମାନେ ନୀତି ପ୍ରଣୟନ କରନ୍ତି ଏବଂ ତାର ଉଲ୍ଲଙ୍ଘନ କରନ୍ତି ମଧ୍ୟ । ଦେଖନ୍ତୁ ବା ହୁଅନ୍ତୁ— ଆପଣ ସେମାନଙ୍କର ଜାତୀୟ ପକ୍ଷୀ ରୂପେ ସ୍ୱୀକୃତ । ଆପଣଙ୍କ ଉପରେ କୌଣସି ଆକ୍ରମଣ ସେମାନେ ଆଇନତଃ ନିଷିଦ୍ଧ କରିଛନ୍ତି । ମାତ୍ର ଆମ୍ଭେ ! ଆମ୍ଭେ ସେମାନଙ୍କର ନିତ୍ୟ ଭୋଜ୍ୟ ! ଆମ୍ଭେ କ'ଣ ପ୍ରାଣୀ ନୋହୁଁ ?

କେଉଁ ସୁକର୍ମ ଯୋଗୁଁ ଆପଣ ଜାତୀୟ ସମ୍ମାନର ଅଧିକାରୀ ଏବଂ କେଉଁ କୁକର୍ମ ଯୋଗୁଁ ମୋର ଏ କୁକ୍‌କୁଟ କୁଳ ନିତ୍ୟହତ !

ହୀନ ମଣିଷଗୁଡିକ, ଏ କଥାଟିକୁ ନ ବୁଝିବା ପର୍ଯ୍ୟନ୍ତ, ସେମାନଙ୍କ ଭିତରେ ଜଳାରୋଗ ଭେଦଭାବ ସତରେ କ'ଣ ଦୂର ହେବ ?

ଇତି ମଧ୍ୟରେ ନୀଚାମ୍ବର ବାବୁଙ୍କର ପୂଜାରୀ ଆସି ଟେକିନେଇ-ଥିଲା କୁକ୍‌କୁଟଟିକୁ ତାଙ୍କର ଗେଷ୍ଟେଇ ଘରକୁ । ଗେଷ୍ଟେଇଘରୁ ଶୁଭୁଥିଲା କୁକ୍‌କୁଟର ପ୍ରତିବାଦ-ଚିତ୍କାର । ଚିତ୍କାର ଶୁଣି ଘୂମନ୍ତ ମୟୂରଟି କିଛି ବିଚଳିତ ହେଲା କି ନାହିଁ, କହିବା ଅନାବଶ୍ୟକ ।

୮ । ୧୧ । ୮୪

# ଭ୍ୟସ୍ତା ପାଦୁକେଶ

ଭ୍ୟାନ୍ ଗଗ୍‌ଙ୍କର କେତେଗୁଡ଼ିଏ କ୍ଲାସିକ୍ ସୃଷ୍ଟି ଭିତରୁ, ହରିଦ୍ରାରଙ୍ଗର ଆବେଶରେ ଅଙ୍କା ଦୁଇଟି ଜୋତାର ପେଣ୍ଟିଂ ପ୍ରକୃତରେ ଖୁବ୍ ରମଣୀୟ । ଅନେକ କବି ମଧ୍ୟ ଜୋତାକୁ ନେଇ ଲେଖିଛନ୍ତି କବିତା ! ଗାଳ୍ପିକମାନେ ବି ସୃଷ୍ଟି କରିଛନ୍ତି ଭିନ୍ନ ଭିନ୍ନ ଭାବବସ୍ତୁର ଗଳ୍ପ–''ହଳେ ଜୋତାର କାହାଣୀ'' ବା ''ପଟେ ଚପଲର ଇତିବୃତ୍ତ'' ଇତ୍ୟାଦି ।

ମାତ୍ର କଠଉକୁ ନେଇ ଯେ କେବେ କୌଣସି ଐକିକ ପ୍ରତିକୃତି ଅଙ୍କାଯାଇଛି, କିମ୍ବା ଗଳ୍ପ ବା କବିତା ଲେଖାଯାଇଛି, ସେଭଳି କିଛି ପ୍ରମାଣ ନାହିଁ ଆଧୁନିକ ସମାଜରେ । ମନେହୁଏ କଠଉ ଯେମିତି ପାଦୁକା ସମ୍ପ୍ରଦାୟର ସବୁଠାରୁ ହୀନ ଏବଂ ଅବାନ୍ତର ପ୍ରତିନିଧିଟିଏ । ତା'ର ସ୍ଥିତି ଯେମିତି କୌଣସି କଳାକାର ସ୍ୱୀକାର କରିବାକୁ ଚାହେଁନା ।

ଏ କଠଉ ଶବ୍ଦଟି ଯେମିତି ହଜି ଯାଇଥିବା ପାଲିଭାଷାର ସଦ୍ୟ ଆବିଷ୍କୃତ ଚିହ୍ନା ଅଚିହ୍ନା ଫଳାଟିଏ ମାତ୍ର ।

କେତେବା କଠଉପ୍ରେମୀ ଅଛନ୍ତି ଏ ସମାଜରେ ?

'କଠଉ' କହିଲେ, ଦୁଇଟି ଚିତ୍ର ମନକୁ ଆସେ । ଗୋଟିଏ ପାଦର ପଞ୍ଝାକୁ ଫିତାରେ ବାନ୍ଧି ରଖୁଥିବା କଠଉ ଏବଂ ଅନ୍ୟଟି ଚୂଡ଼ିଦାର କଠଉ । ଅତୀତରେ ଏଇ ଚୂଡ଼ିଦାର କଠଉର ଚୂଡ଼ି ଉପରେ ଛୋଟ ରୁପା ଝୁମୁକା ବାନ୍ଧି କେହି କେହି କଠଉ ପିନ୍ଧୁଥିବାର ନମୁନା ମଧ୍ୟ ରହିଛି । କିନ୍ତୁ ମନେ ରଖିବାକୁ ହେବ, ଚୂଡ଼ିଦାର କଠଉ ହିଁ ପ୍ରକୃତ ଆର୍ଯ୍ୟ ଏବଂ ଫିତା କଠଉ ତା'ର ଏକ ଯାବନିକ-ସଂସ୍କରଣ ମାତ୍ର ।

ଜୋତାର ପ୍ରଶ୍ନ ଉଠିଲାବେଳେ, ପୁରାତନଚେତା ସଂସ୍କୃତମୋଦୀ ପଣ୍ଡିତମାନେ ମତ ଦିଅନ୍ତି ଯେ, କଠଉହିଁ ପ୍ରକୃତ ପାଦୁକା ଏବଂ ଆଜିକାଲିର ବ୍ୟବହୃତ ଚମଡ଼ା ବା ପ୍ଲାଷ୍ଟିକ ପାଣ୍ଡୋଇ ତା'ର ଏକ ବିବର୍ତ୍ତନ କେବଳ । ଅବଶ୍ୟ ଏ ସମ୍ପର୍କରେ ସେଭଳି ପ୍ରମାଣ ଏବେ ହସ୍ତଗତ ହେବା ଅସମ୍ଭବ ।

ଭାରତ ଏକ ଗ୍ରୀଷ୍ମପ୍ରଧାନ ଦେଶ । ଏହାର ଜଳବାୟୁ ଅନୁସାରେ, ମନୁଷ୍ୟମାନେ ଢିଲା ଏବଂ ହାଲୁକା ପୋଷାକ ପରିଧାନ କରିବା ବିଧେୟ । ପାଦରେ ସେଇଭଳି ହାଲୁକା ଏବଂ ଖୋଲା ପାଦୁକା ମଧ୍ୟ ବ୍ୟବହୃତ ହେବା ଉଚିତ । କିନ୍ତୁ ଆଜିକାଲି ଦାରୁଣ ନିଦାଘ କାଳରେ ମଧ୍ୟ ଅନେକେ ପାଦ ଦୁଇଟିକୁ ସମ୍ପୂର୍ଣ୍ଣ ଆଚ୍ଛନ୍ନ କରି ରଖିବାକୁ ପସନ୍ଦ କରୁଛନ୍ତି । ଏହା ଅପଥା ଅନୁକରଣ ନୁହେଁ ତ ଆଉ କ'ଣ !

"ଗ୍ରୀଷ୍ମକାଳରେ, ଖର ଖପରପ୍ରାୟ ଖଣ୍ଡ ଖଣ୍ଡ ଖସୁଥିବା ବେଳରେ କେହି ଢିଲା ରେଶମୀ ବସନ ପରିଧାନକରି ପାଦରେ ଦୁଇଟି କାଷ୍ଠ ପାଦୁକା ମଡ଼ାଇ, ଏକ ଘଞ୍ଚଘୋର ପାଦପର ପାଦଦେଶରେ ଠିଆହୋଇ ରହିଲେ ଅନୁଭବ କରିବ; ମଣିଷର ସ୍ଥିତି ସତରେ କେତେ ଉଚକିତ ! ମନେହେବ ସାରା ପୃଥିବୀ ଯେମିତି ଆଶ୍ୱାସନାମୟ ।

'କଠଉ' ବ୍ୟବହାର କେବେ କରିନଥିବା ଲୋକଟିଏ ହୁଏତ ବୁଝି-ପାରିବନି କଠଉର ସନ୍ନ୍ୟାସ-ପାଟବତା । ଶୁଦ୍ଧ ହରିଦ୍ୱାରଙ୍କର ପଣସ କାଠରେ ପ୍ରସ୍ତୁତ, ମୀନ ଆକୃତିର କଠଉ । ଅଢ଼େଇ ଆଙ୍ଗୁଳି ଠେକ । ଫୁଲ-ପରି ଓଜନ । ମଥାନରେ ଶିଶୁକାଠର କୁନ୍ଦକରା ଚୂଡ଼ି । ଚୂଡ଼ିର ଠୁଳରେ ହାତୀଦାନ୍ତର କୁଟିକମ ଭଳି କୁଞ୍ଚ କୁଞ୍ଚ ଦାଗ ।

ଏଇଭଳି ପିନ୍ଧିଥିବା ଦୁଇଗୋଟି କଠଉ । ଅଙ୍ଗବାସ ହୋଇଥିବ ଦୁଇଖଣ୍ଡି ଉଜ୍ଜ୍ୱଳ ଗୈରିକ ବସନ । ସମୟ ହୋଇଥିବ ବସନ୍ତକାଳ ।"

ଅବିକଳ ଉପରୋକ୍ତ ଭବାବେଶରେ କଠଉକୁ ପ୍ରଶଂସା କରି କହୁଥିଲେ ଜନୈକ ଇସକନ୍ ସଂସ୍ଥା ଅନୁରାଗୀ ମିଷ୍ଟର ମେକେନ୍‌ଜି । ଇଉରୋପିଆନ୍ ହେଲେ ମଧ୍ୟ, ଓଡ଼ିଶାରେ ରହି ପାଦରେ ତାଙ୍କର ସବୁବେଳେ ଏଇ କଠଉ । ସେ କହନ୍ତି—ଅନ୍ୟ ସମସ୍ତ ପାଦୁକା ଅପେକ୍ଷା ଏଇ କଠଉ ହିଁ ମତେ ସବୁଠାରୁ ଅଧିକ ଶୁଚିମନ୍ତ ମନେହୁଏ ।

ପ୍ରକୃତରେ ମେକେନଜିଙ୍କର ଅନୁଭବକୁ ଅସ୍ୱୀକାର କରାଯାଇ ନପାରେ । କୌଣସି ପଦାର୍ଥ ଧ୍ରୁପଦୀ ସ୍ତରର ନହେଲେ, ଏତେ ଯୁଗଧରି ତା'ର ସ୍ଥିତି ରଖିପାରନ୍ତା ନାହିଁ । ପାଦୁକାମାନଙ୍କ ମଧ୍ୟରେ ଭାରତର ଜଳବାୟୁ ପାଇଁ କଠଉ ହିଁ ସର୍ବୋତ୍କୃଷ୍ଟ—ଏ ହେଲା ତାଙ୍କର ମତ ।

ନିଘେଞ୍ଚା ଜଙ୍ଗଲୀ ଗସ୍ତାରେ ପାଦରେ କଠଉ ଥିଲେ, ତା'ର ଠକ୍‌ଠକ୍ ଶବ୍ଦ ଯୋଗୁଁ ସର୍ପମାନେ ମଧ୍ୟ ପଥତ୍ୟାଗ କରି ପଳାଇ ଯାଆନ୍ତି । କଠଉ ସହିତ ସର୍ପର ଏକ ସଂଯୋଗଟି ଥିବାରୁ ଗୋଖର ସର୍ପର ଫଣାରେ ଥିବା ଚିହ୍ନଟିକୁ କଠଉ ଚିହ୍ନଭବେ ମଣିଷ ଭବିନାହିଁ ବୋଲି କିଏ ଅସ୍ବୀକାର କରିବ !

'ଖଡ଼ମ୍' ବୋଲି ଡାକନାମ ପାଇଥିବା ଏଇ ପାଦୁକାଶ୍ରେଷଟି ବୋଧହୁଏ ବର୍ତ୍ତମାନ କାଳରେ ସବୁଠାରୁ ସୁଲଭ ପାଦୁକା ।

ଏହାକୁ ପାଦରେ ଧାରଣକରି ଜଣେ ଧାଇଁପାରେ, ଆନନ୍ଦରେ ବିଚରଣ କରିପାରେ, ପାହାଡ଼ ମଧ୍ୟ ଚଢ଼ିପାରେ । ମାତ୍ର ହକି, ଫୁଟବଲ୍ କିମ୍ବା କ୍ରିକେଟ ହୁଏତ ଖେଳି ନପାରେ । ତେବେ ହିସାବ କରିବା କଥା, ସାଧାରଣ ମଣିଷଟିଏ କେତେ ସମୟ ବା ଖେଳିପାରେ ଜୀବନକାଳ ଭିତରେ ?

କଠଉ ପିନ୍ଧିଲେ ଯେ କେତେକ ଶାରୀରିକ ସୁସ୍ଥତା ଲାଭହୁଏ, ସେ ନେଇ ଅନେକ ବହୁ ପରୀକ୍ଷିତ ଭେଷଜ୍ଞ ମତ ମଧ୍ୟ ରହିଛି ।

ହେଲେ ବର୍ତ୍ତମାନର କଂକ୍ରିଟ ସଭ୍ୟତାରେ କଠଉର ବହୁଳ ପ୍ରଚଳନ ନିଶ୍ଚିତରେ ନଏଜ୍-ପୋଲ୍ୟୁସନ୍ ସୃଷ୍ଟି କରିପାରେ । କିନ୍ତୁ କଠଉ ତଳେ ରବର ସୋଲ୍ ଦିଆଗଲେ ଏହାର ପରିଧାନ ଅବଶ୍ୟ ଆମୋଦକର ହେବ ।

କିନ୍ତୁ ମନେରଖିବା ଉଚିତ, ଦୁର୍ଦ୍ଧର୍ଷ ଜୀବନଯାତ୍ରା ପାଇଁ କଠଉ ମୋଟେ ଅନୁକୂଳ ନୁହେଁ । କାରଣ ଏହା ଏକ ବେସାମରିକ ଶାନ୍ତିପ୍ରାଣ ପାଦୁକା ।

ଓଡ଼ିଶାବାସୀ ଏ ମହତୀ ଭୂଷଣଟିର ପୁନଃ ପ୍ରଚଳନ କଲେ ମନ୍ଦ ହୁଅନ୍ତା ନାହିଁ ହୁଏତ ।

(୨୩ । ୧୧ । ୮୪)

# ଆମେସବୁ ଭୋଳାନାଥବାବୁ

ଭୁବନେଶ୍ୱରରେ ଥିବା ଗଙ୍ଗାଗଣୀ ମନ୍ଦିରର ନାମ ଗଙ୍ଗାଗଣୀ ମନ୍ଦିର କାହିଁକି ହୋଇଛି ବୋଲି, ଇତିହାସ ଅଧ୍ୟାପକ ବିନାୟକବାବୁଙ୍କୁ ପ୍ରଶ୍ନ-ହେବାରୁ, ସେ ତାଙ୍କର ଅଜ୍ଞତା ପ୍ରକାଶ କରିବା ପରେ, ସେକଥା ନେଇ ବିଶେଷ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ ବୋଲି, ପାଣୁ ପଣ୍ଡିତେ ସୂଚେଇ ଦେଇଥିଲେ ଅନେକଦିନ ତଳେ ।

ସେ କହିଥିଲେ—"ଓଡ଼ିଆ ଗୁଡ଼ାକ ଏଣିକି 'ହାଡ଼ରେକେଟା' ବନି-ଗଲେଣି । ଅନ୍ୟର ଉଚ୍ଛିଷ୍ଟକୁ ବସି ଏମାନେ ଜିଭ ଲଗାଉଥିବେ, ଅଥଚ ସାଜସାମଗ୍ରୀ ଥାଇ ପାକପ୍ରଣାଳୀ ସମ୍ପର୍କରେ ସମୁଚିତ ପରମ୍ପରା ଥିଲେ ମଧ୍ୟ ଏମାନେ ଆପଣା ମନମୁନ ସେ ଦିଗରେ ଖର୍ଚ୍ଚ କରିବେ ନାହିଁ । ନିଜ ବିଷୟରେ ଏମାନେ ଓଟପକ୍ଷୀପରି ଅଜ୍ଞ । ଆଖି ଦୁଇଟିକୁ ବନ୍ଦ କରିଦେଲେ ନିଜେ ଅନ୍ତର୍ଦ୍ଧାନ ହେଇ ବୋଲି ମନେକରିବାପରି ଏ ମଣିଷଗୁଡ଼ିକ ଡିଗ୍ରୀକୁ ଜ୍ଞାନର ବଟିକାପରି ଗ୍ରହଣ କରିଥାଆନ୍ତି । 'ଯାହା ଶିଖାଇଛି ଜଟାଧାରୀରେ ବଗଗୀ' ନ୍ୟାୟରେ ଏମାନଙ୍କ ଜ୍ଞାନ ଏବଂ ଏଷଣା ସେଇ ପାଠ୍ୟକ୍ରମର ସୀମିତ ପୁସ୍ତକରେ ଶେଷ । ଅତଏବ ଇତିହାସ ଅଧ୍ୟାପକ ହୁଅନ୍ତୁ କି ଯାହା ହୁଅନ୍ତୁ, ନିଜମାଟି, ନିଜ ପରମ୍ପରା ବିଷୟରେ ଜାଣିବାକୁ ଏମାନେ ପରା-ଙ୍ମୁଖ । ଆହେ ! ସେ ଦିଗକୁ ମୂଳକଥା ଲୟନାହିଁ ଏ ଗୁଡ଼ାଙ୍କର । ଆଉ ଆମ ବିନାୟକ ସେଥିରୁ ବାଦ୍ ପଡ଼ନ୍ତେ କାହିଁକି ? ସିଏ ତ ସେଇ ଇଉର ମଞ୍ଜି !"

କୌଣସି ଏକ ଖରଦିନ ଛୁଟିରେ, ଗାଁରେ ସମସ୍ତେ ଏକତ୍ରିତ ହୋଇଥିବା ବେଳେ ବିନାୟକବାବୁଙ୍କୁ ନେଇ ପାଣୁ ପଣ୍ଡିତଙ୍କର ଏ ଧରଣର

ମତବ୍ୟଟିକୁ ଭୁଲିଯାଇଥିଲେ ଭୋଳାନାଥବାବୁ । ବିନାୟକବାବୁ ନକହିପାରିଲେ ମଧ୍ୟ ଗଞ୍ଜାଗଣୀ ମନ୍ଦିରର ନାଁ ଗଞ୍ଜାଗଣୀ ମନ୍ଦିର କାହିଁକି ହୋଇଛି ସେକଥା ସେଦିନ ଭୋଳାନାଥବାବୁ ପାଣ୍ଡୁ ପଣ୍ଡିତଙ୍କଠାରୁ ମଧ୍ୟ ସଂଗ୍ରହ କରିପାରି-ନଥିଲେ ।

ଭୋଳାନାଥ ରଥେ, ସେକ୍ରେଟେରିଏଟ୍‌ରେ ବଡ଼ବାବୁ ! କି ଯାଏ ଆସେ ତାଙ୍କୁ ଓଡ଼ିଆ କଳାସ୍ଥାପତ୍ୟରେ ସାଧାରଣଜ୍ଞାନ ଲଭକରି ! ସିଏ ତ ଆଉ ଅନ୍ୟକେଉଁ ସଂସ୍କୃତିପ୍ରେମୀ ରାଜ୍ୟର ଲୋକ ନୁହଁନ୍ତି ଯେ ନିଜକଥା ଜାଣିବା ପାଇଁ ଘଡ଼ିଏ ମାସେ ସମୟ ଅଯଥା ଖର୍ଚ୍ଚ କରିବେ ! ସିଏ ଏକବାର ଓଡ଼ିଆ । କୋଉ ଲଙ୍ଗୁଳାନରସିଂହଦେବଙ୍କ ବେଳର ଓଡ଼ିଆ ହୋଇଛନ୍ତି ଯେ !

ସକାଳେ ଅଷ୍ଟମଶ୍ରେଣୀରେ ପଢ଼ୁଥିବା ସାନପୁଅ, ବାପାଙ୍କୁ ପଚାରି ଦେଲା ଏଇ ପ୍ରଶ୍ନଟି–ଗଞ୍ଜାଗଣୀ ମନ୍ଦିରର ନାଁ ଗଞ୍ଜାଗଣୀ ମନ୍ଦିର କାହିଁକି ହୋଇଛି ? ଭୋଳାନାଥବାବୁ ପ୍ରଥମେ ପ୍ରଶ୍ନଟିକୁ ସରଳଭାବରେ ନେଇ ଅଫିସର ଯେ କୌଣସି ଫାଇଲକୁ ଟେବୁଲ ଉପରୁ ହଟେଇଦେବାପରି କହିଥିଲେ–ଆରେ ସେତେବେଳର ଗଞ୍ଜା ଆଉ ଗଣୀ ମିଳିତ ଆଗ୍ରହରେ ସେ ମନ୍ଦିରଟିକୁ କରେଇଥିଲେ ସେଇଥିପାଇଁ । ନହେଲେ ଆଉ କାହିଁକି ?

କିନ୍ତୁ ସାନପୁଅ ଟାଳିଦେଲା କଥାଟାକୁ । କହିଲା–ସେତେବେଳେ କୋଉ ମନ୍ଦିରଟାକୁ ଗଞ୍ଜାଗଣୀ ନ କରଉଥିଲେ ଯେ !

ଅତଏବ, ଭୋଳାନାଥବାବୁ ହଉ ବୁଝିବା କହି ଖସି ଆସିଥିଲେ ଘରୁ । ସେକ୍ରେଟେରିଏଟ୍‌ରେ ଚିହ୍ନାଜଣା ଢେର୍ ଢେର୍ ଲୋକଙ୍କୁ ସେ ପଚାରିଥିଲେ ଏଇ କଥାଟି । କିଏ କହିଲା, ଭାଇ ଜାଣେନି, କିଏ କହିଲା, ଆହେ ଗୋଲାପ ଫୁଲର ନାଁ ତ ଗୋଲାପ ଫୁଲ, ଆଉ କାହିଁକି ଗୋଲାପ ଫୁଲ କ'ଣ ? ସେଇଭଳି ଗଞ୍ଜାଗଣୀ ମନ୍ଦିର । ଆଉ କିଏ କହିଲା, ହୋ ଭୋଳାନାଥବାବୁ ସେଥିରୁ କ'ଣ ମିଳିବ କହିଲ ! ଆସ ଚା' ଖାଇବା କ୍ୟାଣ୍ଟିନ୍‌ରେ ।

ଶେଷପର୍ଯ୍ୟନ୍ତ ଭୋଳାନାଥବାବୁଙ୍କର ଉତ୍ତର ସଂଗ୍ରହ କରିବା ହୋଇନଥିଲା । ଏଇଭଳି ଓଡ଼ିଶା । ଦିନୁଦିନ ଏହାର ବୈଭବ ଅପସୃୟମାନ । ଅତୀତକୁ ପ୍ରେରଣା କରି ନିଜର ମନୋବଳ ଗଢ଼ିବା ପାଇଁ ପର୍ଯ୍ୟାପ୍ତ ସୁଯୋଗ ଥିଲେ ମଧ୍ୟ ଆପଣା ଅପରିଣାମଦର୍ଶିତା ଯୋଗୁଁ ଏ ଅଞ୍ଚଳର ଲୋକେ ଅଯୋଗ୍ୟ ବୋଲି କୁହାଯାଇପାରେ ।

ପ୍ରାଚୀନ ଭାରତୀୟ ଶିଳ୍ପସ୍ଥାପତ୍ୟ ସମଗ୍ର ଭାରତରେ ତୁଙ୍ଗସ୍ପର୍ଶୀୟ ଭାବେ ସ୍ୱୀକୃତ । ସେଇ ମହାନ୍ ପରମ୍ପରା ଏବେ ମଧ୍ୟ ଓଡ଼ିଶାର ପୁର-ପଲ୍ଲୀରେ କ୍ଷୀଣସୂତ୍ରରେ ଜୀବିତ । ପଟ୍ଟଚିତ୍ରଠାରୁ ଆରମ୍ଭକରି ପଥରଶିଳ୍ପ

ପର୍ଯ୍ୟନ୍ତ ଅନେକ କ୍ଷେତ୍ରରେ ହୁଏତ ଏ ଅଞ୍ଚଳଟି ଏବେ ମଧ୍ୟ ପ୍ରସିଦ୍ଧି ଲାଭ କରିପାରନ୍ତା । ହେଲେ କିଏ ପଗ୍ଭରେ ଏ ମାଟିର ପଥରକୁ ! ବେଳ କାହିଁ କାହାକୁ ।

ସଂସ୍କୃତିର ତଥାକଥିତ ପ୍ରଗତିଶୀଳ ପଦକ୍ଷେପଣରେ, ଶିଳ୍ପସ୍ଥାପତ୍ୟ ବୋଧହୁଏ ଅନେକ ପଛରେ ପଡ଼ିଗଲଣି । ନଚେତ୍ ଓଡ଼ିଶାର ରାଜଧାନୀରେ ସୁନ୍ଦର ହର୍ମ୍ୟ ନିର୍ମାଣ କରି ଭଲ ଦୁଇ ପଇସା ରୋଜଗାର ସହ ଘରେ କିସମ କିସମ ଆଧୁନିକ ସାଜ ସଜାଡ଼ୁଥିବା ଭୋଳାନାଥବାବୁମାନେ ଆପଣା ମାଟିର ଶିଳ୍ପଚାତୁରୀ ବିଷୟରେ ଆଗ୍ରହୀ ନ ହୁଅନ୍ତେ କାହିଁକି ?

ରାଜାରାଣୀ ମନ୍ଦିରରେ ବିଗ୍ରହ ନାହିଁ । ସେଥିରେ ବ୍ୟବହୃତ ପ୍ରସ୍ତରର ନାମ ରାଜାରାଣୀୟା ପ୍ରସ୍ତର । ହୁଏତ ସେଇ କାରଣରୁ ଏ ମନ୍ଦିରର ନାମ ରାଜାରାଣୀ ମନ୍ଦିର । ଉତ୍କଳରେ ପ୍ରାପ୍ତ ହେଉଥିବା ଡାଳିମ୍ବା, କନ୍ଦା, ମାଙ୍କଡ଼ା ବଉଳମାଳା, କୁଣ୍ଡା ଓ ମୁଗୁନି ପଥରମାନଙ୍କ ମଧ୍ୟରେ, ରାଜାରାଣୀୟା ପଥର ହିଁ ଅତ୍ୟନ୍ତ ବିରଳ ଓ ବୈଚିତ୍ର୍ୟପୂର୍ଣ୍ଣ ।

ଋତୁର କ୍ରମ ଏବଂ ଦିବସରାତ୍ରିରେ ଉତ୍ତାପର ଉନ୍ନତି ଓ ଅବନତି ସହ ତାଳରଖି କୁଆଡ଼େ ଏ ପ୍ରସ୍ତର ପରିବର୍ତ୍ତିତ କରେ, ନିଜର ରୂପରଙ୍ଗ ବର୍ଣ୍ଣଛଟା–ଠିକ୍ ରାଜାରାଣୀମାନଙ୍କ ମହାର୍ଘ ପୋଷାକ ପରିଚ୍ଛଦର ବେଳୁ-ବେଳ ସୁଶୋଭନୀୟ ପରିବର୍ତ୍ତନ ଭଳି । ସେଇଥିପାଇଁ ରାଜାରାଣୀୟା ପଥର ଏହାର ନାମ ।

ଭୋଳାନାଥବାବୁଙ୍କର ଏସବୁ ତର୍ଜମା କରିବାକୁ ବେଳନାହିଁ ସିନା, ଇତିହାସର ଅଧ୍ୟାପକ ବିନାୟକ ତ୍ରିପାଠୀ ଏ ନେଇ ଆଗ୍ରହ ପ୍ରକାଶ କରିବା ଉଚିତ ନୁହେଁ କି ?

୨୮-୧୧-୮୬

# ମୁକ୍ତି କଣ୍ଠାଲଙ୍କାର ସ୍ମୃତି

ଜ୍ୟୋତିର୍ବିଦ୍ ପଣ୍ଡିତ ସାମନ୍ତ ଚନ୍ଦ୍ରଶେଖର ବା ପଠାଣି ସାମନ୍ତ ୧୮୩୫ ମସିହା ପୌଷ କୃଷ୍ଣାଷ୍ଟମୀ ତିଥିରେ ପୂର୍ବତନ ଗଡ଼ଜାତ ରାଜ୍ୟ ଖଣ୍ଡପଡ଼ାରେ ଜନ୍ମଗ୍ରହଣ କରିଥିଲେ । ଏକ ସମୟରେ ସେ ଥିଲେ ଉତ୍କଳର ଏକମାତ୍ର ଗର୍ବ । ସେଇଥିପାଇଁ ଫକୀରମୋହନ ତାʼଙ୍କ ସମ୍ପର୍କରେ ଲେଖିଥିଲେ– "ଯେ କୀର୍ତ୍ତି ଉଡ଼ାଇ ଦେଲ ଭରତ ମଧ୍ୟରେ/ରାଜାମାନେ ନ ଦେଖିବେ ସ୍ୱପନରେ ଥରେ ।"

ଗୋପବନ୍ଧୁ ଓ ନନ୍ଦକିଶୋରଙ୍କ ଭାଷାରେ ସେ ଥିଲେ, ଯଥାକ୍ରମେ 'ଉତ୍କଳ ଭାସ୍କର' ଏବଂ 'ନବ-ଉତ୍କଳ-ମଣ୍ଡନ' ।

ଅତଏବ ଏଭଳି ଜଣେ କ୍ଷଣଜନ୍ମା ପୁରୁଷଙ୍କର ଜନ୍ମ ଦିନ ପାଳନ କରିବା ସେ ଅଞ୍ଚଳର ଯେ କୌଣସି ଲୋକ ପକ୍ଷରେ ଆନନ୍ଦର କଥା । କଥାଟି ଯେତେ ଆଞ୍ଚଳିକ ହେଉନା କାହିଁକି, ଜଣେ ମହାପୁରୁଷଙ୍କ ସହିତ କୌଣସି ନା କୌଣସି ଉପାୟରେ ଜଡ଼ିତ ହେବାର ସୌଭାଗ୍ୟ ଯେ କେହି ବ୍ୟକ୍ତି ନିକଟରେ ବାଞ୍ଛନୀୟ ନୁହେଁ କି ?

ପ୍ରତିବର୍ଷ ଡିସେମ୍ବର ମାସରେ ସେଇ କାରଣରୁ ଅନ୍ୟାନ୍ୟ ଜୟନ୍ତୀ ଭଳି ଖଣ୍ଡପଡ଼ାରେ ସାମନ୍ତ ଚନ୍ଦ୍ରଶେଖରଙ୍କର ଜୟନ୍ତୀ ପାଳନ କରାଯାଏ । ଓଡ଼ିଶାରେ ଅନ୍ୟତ୍ର ମଧ୍ୟ ଏହା ପାଳିତ ହୋଇଥାଏ ।

ଏ ବର୍ଷ ବି ନିର୍ଦ୍ଦିଷ୍ଟ ଦିନରେ ପଠାଣି ସାମନ୍ତଙ୍କର ଉତ୍ସବ ଖଣ୍ଡପଡ଼ାରେ ପାଳିତ ହେବ । ସଭାମଞ୍ଚ ପ୍ରସ୍ତୁତ ହେବ ପାରମ୍ପରିକ ଆଗ୍ରହରେ । ମୁଖ୍ୟ

ଅତିଥି, ମୁଖ୍ୟବକ୍ତା ନିମନ୍ତ୍ରିତ ହେବେ । ସଭ ସମୟରେ ସେ ଅଞ୍ଚଳର ଦୁଇ ଗୁରି ପକ୍ୱଶ୍ମଶ୍ରୁ ସଂସ୍କୃତ-ବୋଧା ପଣ୍ଡିତ, ଭବୋଚ୍ଛ୍ୱାସରେ ଅନୁରଣନ କରିବେ ସାମନ୍ତଙ୍କର କେଇଧାଡ଼ି ସଂସ୍କୃତ ଶ୍ଳୋକ 'ସିଦ୍ଧାନ୍ତ ଦର୍ପଣ' ତଥା 'ଦର୍ପଣସାର'ରୁ ଉଦ୍ଧାର କରି । କେହି କେହି ବୃଦ୍ଧ ବ୍ୟକ୍ତି ସାମନ୍ତଙ୍କୁ ସ୍ମରଣ କରି କ୍ରନ୍ଦନ ଅଭିନୟ କରିବା ବି ଅସମ୍ଭବ ନୁହେଁ । ଜଣେ ଦୁଇଜଣ ସ୍ଥାନୀୟ ଯୁବକ, ଏହା ହିଁ ନେତୃତ୍ୱ ଉଦ୍‌ଘାଟନର ଶୁଭ ମୁହୂର୍ତ୍ତ ଭବି ସ୍ମୃତି ସଭକୁ ରାଜନୀତିର ରଙ୍ଗମଞ୍ଚରେ ପରିଣତ କରି, ଶୋଷିତ, ସର୍ବହରାଙ୍କ ଉପରେ ଭଷଣ ଦେବାକୁ ପଛାଇବେ ନାହିଁ ହୁଏତ !

ମୁଖ୍ୟ ବକ୍ତା କହିବେ : "ସାମନ୍ତ ଥିଲେ ଜ୍ୟୋତିର୍ଲୋକଧ୍ୟାନୀ ଜ୍ୟୋତିର୍ଲୋକଜ୍ଞାନୀ, ଅତଏବ ଆମର ନମସ୍ୟ" । ମୁଖ୍ୟ ଅତିଥି କହିବେ : କବି କହିଥିଲେ–"ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ / ନରଦେହେ ଥିବ ଯାବତ ହୃଦୟ" । ତା'ପରେ ବିଚିତ୍ରା । ପରେ ପରେ ସଭ ସାଙ୍ଗ ହେବ । ପୁଣି ବର୍ଷଟିଏ ପାଇଁ ଏ ନିରୀହ ସ୍ମୃତିଟି ଫେରିଯିବ ଜନସାଧାରଣଙ୍କ ସ୍ମୃତିର ଶୀତଳ ଭଣ୍ଡାରକୁ ।

ପ୍ରଶ୍ନ ହୋଇପାରେ–ଏ କ'ଣ ଜୟନ୍ତୀ ଉତ୍ସବ ? କୌଣସି ମହା-ପୁରୁଷ ବା ଉଜ୍ଜ୍ୱଳ ବ୍ୟକ୍ତିତ୍ୱର ସ୍ମୃତି ସ୍ମରଣ ପାଇଁ ଏଇ କ'ଣ ମାର୍ଗ ? ଉତ୍କଳରେ ତଥା ଭରତରେ ଅନେକ ଜୟନ୍ତୀ ପାଳିତ ହୁଏ । ଅବଲୀଳା-କ୍ରମର ପାକୁଳି ଭଳି ଏଥିରେ ରୋମନ୍ଥନ କରଯାଏ କେବଳ ଏକ ପାଳିତ ପରମ୍ପରାକୁ । ମାତ୍ର କେତେଜଣ ଲୋକ ମନେ ରଖନ୍ତି ସେ ଆଦର୍ଶଟିକୁ ! କେତେଜଣ ପ୍ରକୃତରେ ନିଷ୍ଠାପର, ସେ ବ୍ୟକ୍ତିତ୍ୱର ଆଦର୍ଶ ଅନୁସରଣରେ !

ଶ୍ରୀକୃଷ୍ଣଙ୍କ ପରେ, ସମକାଳୀନ ଭରତରେ ଗାନ୍ଧିଜୀ ବୋଧହୁଏ ସର୍ବବୃହତ ନାମ । ପ୍ରତିବର୍ଷ ଅକ୍ଟୋବର ଦୁଇରେ ସମତାଳର ସଙ୍ଗୀତ ରେକର୍ଡ ଭଳି ରାମଧୁନ୍ ଗୁଞ୍ଜରିତ ହୁଏ, ସରକାରୀ ଉତ୍ସାହରେ । ହେଲେ, କାହିଁ ସେ ଆଦର୍ଶର ସ୍ମୃତି ! କାହିଁ ସେ ଅହିଂସାର ଅପରୂପ ସ୍ପର୍ଶ ?

ପଠାଣି ସାମନ୍ତ ଥିଲେ ଉଦାର ମଣିଷ । ଧନ ଲାଭର ସମସ୍ତ ସୁଯୋଗକୁ ପାଦରେ ଠେଲିଦେଇ ଜ୍ଞାନ ଲାଭ ପାଇଁ ସେ ନିଜର ସଦା ରୋଗଗ୍ରସ୍ତ ଦେହକୁ, ନୁଖୁର ବଳିତା ପରି ଶେଷ ପର୍ଯ୍ୟନ୍ତ ଜାଳି ଦେଇ-ଥିଲେ । ଖଣ୍ଡପଡ଼ା ପରି ଅନ୍ଧ ରାଜ୍ୟରେ କନ୍ଧଭଳି ଜୀବନଯାପନ କରି ମଧ୍ୟ ସେ ଏଇ ଜ୍ଞାନର ଗରିମା ଯୋଗୁଁ ହୋଇ ପାରିଥିଲେ ନମସ୍ୟ । ଅନ୍ୟକୁ ସାହାଯ୍ୟ କରିବାପାଇଁ ଯାଇ, ଶେଷ ପର୍ଯ୍ୟନ୍ତ, ସେ ହୋଇଯାଇଥିଲେ କାଙ୍ଗାଳ ।

ଏବେ ସେ ଅଞ୍ଚଳରେ, କେହି ଜଣେ ନିଜର ଜୀବନପାତ୍ରରେ ଏଭଳି ମହାନ ଆଦର୍ଶର ବିନ୍ଦୁଟିଏ ମଧ୍ୟ ଧରି ରଖିବାକୁ ଇଚ୍ଛୁକ ବୋଲି

କହିବା କଷ୍ଟକର । ତା'ଙ୍କ ଗଣନାର ବିଜ୍ଞତାକୁ ଋଦ୍ଧିମନ୍ତ କରିବା ପାଇଁ ଜ୍ୟୋତିର୍ବିଜ୍ଞାନ ବିଦ୍ୟାଳୟଟିଏ ମଧ୍ୟ ଖୋଲିବା ଦିଗରେ ଏଯାଏଁ ଆଗ୍ରୁଚି-ଟିଏ ଉଠି ନାହିଁ ସାରା ଓଡ଼ିଶାରେ ।

ତେବେ କେମିତି ବଞ୍ଚିବ ସେ ସ୍ମୃତି ?

କୌଣସି ମହାପୁରୁଷଙ୍କର ଆଦର୍ଶକୁ ଭୁଲି କେବଳ ତା'ଙ୍କର ଜନ୍ମ-ଦିନଟିକୁ ମନେରଖିବା ନିଶ୍ଚିତ ଅନାବଶ୍ୟକ । ସେଇଭଳି ଅନାବଶ୍ୟକ ମଧ୍ୟ ଗାନ୍ଧିଜୀଙ୍କର ଆଦର୍ଶକୁ ଭୁଲି କେବଳ ଖଦଡ଼ ପୋଷାକ ପିନ୍ଧି, ନିଜକୁ ଗାନ୍ଧିବାଦୀ ବୋଲି କହି ବୁଲିବା ।

ବାଲେଶ୍ୱରର କୌଣସି ଏକ ଗ୍ରାମରେ ଏକଦା ଥିଲେ ଜଣେ ମହାପୁରୁଷ । ତା'ଙ୍କର ଜୀବନାଦର୍ଶ ଥିଲା ଗ୍ରୀକ୍ ଦାର୍ଶନିକ ଡାଇଓଜିନିସ୍‌ଙ୍କ ପରି ଜୀବନର ସର୍ବନିମ୍ନ ଆବଶ୍ୟକତାରେ ହିଁ ବଞ୍ଚି ରହିବା । ଶେଷ ପର୍ଯ୍ୟନ୍ତ ସେ କହୁଥିଲେ– ଭଲପାଇବା ହିଁ ମଣିଷର ପ୍ରାକୃତିକ ଅଧିକାର, ଘୃଣା କରିବା ନୁହେଁ । ନିରଳସ ଖାଦ୍ୟକୁ ପାଥେୟ କରି, ସେ ଜୀବନ ସାରା ତେଣୁ କେବଳ ମୁଢ଼ି ଓ କଞ୍ଚାଲଙ୍କା ଖାଇ ବଞ୍ଚିଥିଲେ ।

ଏ ମହାପୁରୁଷଙ୍କର ଜୟନ୍ତୀ, ସେ ଗ୍ରାମବାସୀ ପ୍ରତିବର୍ଷ ପାଳନ କରନ୍ତି । ମାତ୍ର ଦୁଃଖର କଥା, ତା'ଙ୍କର ଆଦର୍ଶଟିକୁ ସଦା କଳହରତ ଗ୍ରାମବାସୀମାନେ ଭୁଲିଯାଇ କେବଳ ମନେ ରଖିଛନ୍ତି ମୁଢ଼ି ଏବଂ କଞ୍ଚା ଲଙ୍କାର ସ୍ମୃତିକୁ । ଏବଂ ପ୍ରତିବର୍ଷ ସେହି ଦିନର ଉପରବେଳା ସାରା ଗ୍ରାମବାସୀମାନେ ସେହି ଖାଦ୍ୟ ଖାଇ ରହନ୍ତି ।

ସେଇଭଳି ପଠାଣି ସାମନ୍ତଙ୍କର ସେଇ ଗୋଟିଏ ସ୍ମୃତି–

"ବ୍ରହ୍ମାଣ୍ଡ ଖଣ୍ଡଭଣ୍ଡ ସ୍ଥିରତରଧରଣୀ ମଣ୍ଡଳ ଭ୍ରାନ୍ତିଶୌଣ୍ଡ"

୭ । ୧୨ । ୮୪

# କେତେ ନିକଟ ସେ ହାତ

ମରଣର ଉପସ୍ଥିତି ଏପରି ଏକ ସିଧାସଳଖ ହାତ ଯେ, ତାହା ଯେ କୌଣସି ମୁହୂର୍ତ୍ତରେ, ଯେ କୌଣସି ସ୍ଥାନରେ, ଯେ କୌଣସି ପ୍ରାଣୀ ପାଖରେ, ଯେ କୌଣସି ମାର୍ଗରେ ପହଞ୍ଚିଯାଇପାରେ । ମରଣ ଯେମିତି ସର୍ବବ୍ୟାପୀ ନୀରବତାଟିଏ କେବଳ ! ତା'ର ଉପସ୍ଥିତି ପାଇଁ ଅଜଣା ଇଶାରଟିଏ ହିଁ ଯଥେଷ୍ଟ ।

ମାତ୍ର କିଏ ଜାଣେ କେମିତି ସେ ଇଶାରର ଆକୃତି ?

ମରଣ ଆକସ୍ମିକ ହୋଇପାରେ । ହୋଇପାରେ ଭୟାନକ । ଏବଂ ମରଣ ବି ପ୍ରାକୃତିକ ଉପାୟରେ ଆସିପାରେ । କିନ୍ତୁ ମଙ୍ଗଳୁଆଁ ଜଳ ଭଣ୍ଡାରରୁ ଆକସ୍ମିକ ସମସ୍ତ ଜଳରାଶି ଉଭାନ୍ ହୋଇଯିବା ପରି ଉଦ୍ଭୁଟ୍ଟ ଯୌବନରେ ମରଣ କାହାକୁ ବାନ୍ଧିନେବା ସତରେ କେତେ ହୃଦୟ-ବିଦାରକ !

ଜୀବନ ଯାହାର ଯେତେ ସଫଳ ବା ଅସଫଳ ହେଉନା କାହିଁକି, ମୃତ୍ୟୁର ନାଁଟି ଉଚାରଣ କରିବା ମାତ୍ରେ ସବୁ ଯେମିତି ସ୍ଥାଣୁ ପାଲଟିଯାଏ । ନିଷ୍କ୍ରିୟ ହୋଇଯାଏ ଯେତେବଡ଼ ସ୍ଥିତି– ହେନାଫୁଲଠାରୁ ଆରମ୍ଭ କରି ବ୍ଲୁ ହ୍ୱେଲ୍ ସାମୁଦ୍ରିକ ଜୀବ ପର୍ଯ୍ୟନ୍ତ । କିଏ ଜାଣେ କେତେବେଳେ କାହାର ପାଳି !

ପୁଣି ମୃତ୍ୟୁର ମାର୍ଗ କେତେ ବିଭିନ୍ନ ସତେ ! କୋଟି କୋଟି ଜୀବଙ୍କ ପରି କୋଟି କୋଟି ମାର୍ଗ ମରଣର କେଉଁ ଗମଚନ୍ଦ୍ରକୁ ସରଯୂ

ନଦୀରେ ଝାସ ଦେବାକୁ ପଡ଼େତ କେଉଁ କୃଷ୍ଣଙ୍କୁ ଶବରର ନାରାଚ ; ପୁଣି ଗାନ୍ଧୀପାଇଁ ତିନିଗୋଟି ଗୁଳିତ କେଉଁ ବୁଦ୍ଧପାଇଁ ସାମାନ୍ୟ ଆମାଶୟ ରୋଗ । କିଏ ଜାଣିଥିଲ ଦିଗ୍‌ବିଜୟୀ ସମ୍ରାଟ୍ ଆଲେକ୍‌ଜାଣ୍ଡର ଏମିତି ଅକାଳରେ ନିର୍ଜନ ମରୁଭୂମିରେ ଦିନେ ଟଳିପଡ଼ିବେ ବୋଲି ! ଜଣେ ଶଙ୍କରାଚାର୍ଯ୍ୟଙ୍କ ପାଇଁ ଅଣତିରିଶ ବର୍ଷ ଜୀବନ ଯଥେଷ୍ଟ ହୋଇଯାଏ ତ, ଜଣେ ପ୍ଲାଟୋଙ୍କ ପାଇଁ ଅଶୀ । ଏଇତ ଜୀବନ !

ମରଣତ ମରଣ, ମାତ୍ର କଂସଭଳି ପରାକ୍ରମୀ ଯୋଦ୍ଧା ମଧ୍ୟ ଟଳିପଡ଼ୁଛି କେବଳ କୃଷ୍ଣ ଦର୍ଶନରେ । କାହାକୁ ଦେଖୁଦେଲେ ପଞ୍ଚତ୍ୱପ୍ରାପ୍ତ ହେବାଠାରୁ ବଳି ନପୁଂସକ ମରଣ ଆଉକ'ଣ ହୋଇପାରେ ?

ମୃତ୍ୟୁର ଭିନ୍ନତା ନେଇ, ଏକ ଲାଇବ୍ରେରୀ ଗଢ଼ିବା ମଧ୍ୟ ସମ୍ଭବ । ଭାଷାର ବିଭିନ୍ନ ପରିପ୍ରକାଶ ଭଳି ମୃତ୍ୟୁବି ଅଜସ୍ର ପ୍ରକାଶମୁଖୀ । କେଉଁ-ଠାରେ କିଏ ପ୍ରାର୍ଥନା କରୁ କରୁ ଆରପାରି ହୋଇଯାଉଛି ତ କେଉଁଠାରେ କେହି ତିଳ ତିଳ ହୋଇ ମାସ ମାସ ବର୍ଷ ବର୍ଷ ଧରି ଅପେକ୍ଷା କରୁଛି ସେଇ ହୀମ ଶୀତଳ ଚରମ ସ୍ପର୍ଶକୁ । ଜନ୍ମ ପରେ ମରଣର ଫଳାଫଳ କାହାପାଇଁ କେତେବେଳେ ଘୋଷିତ ହୋଇଯାଏ ସେକଥା ମଣିଷ ଜାଣିପାରୁ ଥାଆନ୍ତା ହେଲେ !

ସେଇତ ବିସ୍ମୟ ! ଜନ୍ମପରେ ଆଉ ଯାହାକିଛି ଅନିର୍ବାର୍ଯ୍ୟ ନହେଉ ପଛେ ମୃତ୍ୟୁ କିନ୍ତୁ ସୁନିଶ୍ଚିତ । ତଥାପି ମଣିଷ ଭୁଲିଯାଏ ଏ ଚରମ ଅଥଚ ଏଇ 'ଆସିଗଲା ଆସିଗଲା' ପରିଣତିଟିକୁ । ଯୁଧିଷ୍ଠିର ସେଇ କଥା ହିଁ ଆଶ୍ଚର୍ଯ୍ୟଜନକ ବୋଲି ପ୍ରକାଶ କରିଥିଲେ ଯକ୍ଷ ନିକଟରେ ।

ମୃତ୍ୟୁ ଏକ ସୁନିଶ୍ଚିତ ପରିଣତି । ତଥାପି ପ୍ରତି ମୁହୂର୍ତ୍ତରେ ମଣିଷ ସେ ପରିଣତିଟିକୁ ଭୁଲିବାକୁ ବାଧ୍ୟ । ଅପରପକ୍ଷରେ ଅନବରତ ମୃତ୍ୟୁ ମୃତ୍ୟୁ ଉଚ୍ଚାରଣ କରୁଥିବା ଗୁଡ଼ିଏ ମଣିଷରେ, ଏ ପୃଥିବୀ ଯଦି ପରିପୂର୍ଣ୍ଣ ହୋଇଯାଏ, ତେବେ ସଭ୍ୟତା ଓ ପ୍ରଗତିର ଆଲୋକରେ କେତେ ଅନ୍ଧାର ଲେପି ହୋଇଯିବ, ସେକଥା ଅନୁମାନ କରାଯାଇପାରେ ।

ମୃତ୍ୟୁ ଏକ ଅହରହ ବର୍ଦ୍ଧମାନ ସ୍ମୃତି । ଅତଏବ ନଖ ମଣ୍ଡନପରି ଏହାର ସ୍ମୃତିକୁ ମୁଣ୍ଡନ କରିବାରେ ହିଁ ମଣିଷ ଜୀବନ ପ୍ରତି ଅଧିକ ଆକୃଷ୍ଟ ହୁଏ । ବେଳେବେଳେ ମଧ୍ୟ ଏଇ ମୁଣ୍ଡନ କରିବାର ଗାଢ଼ ପ୍ରଚେଷ୍ଟା ଭିତରେ ବି ମଣିଷ ମୃତ୍ୟୁଆଡ଼କୁ ହମହମ ହାତ ବଢ଼ାଇଦିଏ, ଠିକ୍ ଜାପାନର ପ୍ରଖ୍ୟାତ ସାହିତ୍ୟିକ କାଓବାଟାଙ୍କ ପରି । ମୃତ୍ୟୁ ସହିତ ସାଲିସ୍ ନକରି ଶେଷ ପର୍ଯ୍ୟନ୍ତ ଜୀବନକୁ ଉପଭୋଗ କରିବାର ପ୍ରତିଶ୍ରୁତିକୁ କଲମ ମୁନରେ ଉଦ୍‌ଘୋଷିତ କରି କରି ଶେଷରେ କାଓବାଟା କରିଥିଲେ

ଆତ୍ମହତ୍ୟା । ଯେମିତି ମାର୍କିନ୍ ସାହିତ୍ୟିକ ହେମିଙ୍ଗ୍‌ୱେ଼ ଜୀବନର ଝଡ଼ ଏବଂ ବାର୍ଦ୍ଧକ୍ୟ ବିରୁଦ୍ଧରେ ସଂଗ୍ରାମକୁ ତାଙ୍କ ସାହିତ୍ୟର ମେରୁଦଣ୍ଡ କରି ମଧ୍ୟ ପରିଶେଷରେ ନିଜକୁ ନିଜେ ଗୁଳି ଟିପିଦେଇ ସ୍ୱୀକାର କରିନେଇ-ଥିଲେ ମୃତ୍ୟୁର ଚିରନ୍ତନୀ ବିଜୟକୁ ।

ସବୁବେଳେ ମୃତ୍ୟୁ କ'ଣ ସତରେ ସକଳ ପ୍ରାଣୀଙ୍କ ଉପରେ ବିଜୟ ଲାଭ କରେ ? ମୃତ୍ୟୁ କ'ଣ ତେବେ ସଂସାରର ସର୍ବଶେଷ ସମ୍ରାଟ୍ !

ଥରେ ସିଂହଟିଏ ଆହାର ପାଇଁ ପଂଝାରେ ଜାବୁଡ଼ି ଧରିଥିବା ଶୃଗାଳଟିକୁ ତାଚ୍ଛଲ୍ୟକରି ପଚାରିଲା—ବର୍ତ୍ତମାନ ତୁ ଚାହୁଁ କ'ଣ ? ଶୃଗାଳ ମୋଟେ ବିଚଳିତ ନହୋଇ ଉତ୍ତର ଦେଲା— ମୁ ମୃତ୍ୟୁ ଚାହେଁ । ସିଂହ ପୁଣି ପ୍ରଶ୍ନ କଲା : ତୁ ଜୀବନ ନଚାହିଁ ମୃତ୍ୟୁ କାହିଁକି ଚାହୁଁଛୁ ?

ଶୃଗାଳ କହିଲା—ହେ ପଶୁରାଜ ! ମୃତ୍ୟୁ ହିଁ ସତ୍ୟ, ମୁଁ ଅସ୍ୱୀକାର କଲେବି ସେ ଆସିବ । ତେଣୁ ନିର୍ଣ୍ଣିତକୁ ସ୍ୱାଗତ ନକରି, ଅନିଶ୍ଚିତକୁ ମୁଁ ଅପେକ୍ଷା ରଖିବା କ'ଣ ବିଜ୍ଞତାର ପରିଚାୟକ ? ସିଂହର କେଉଁ ଅନୁଭବ ହେଲା କେଜାଣି, ସେ ଶୃଗାଳଟିକୁ ନିଜ କବଳରୁ ମୁକ୍ତ କରିଦେଲା ଏବଂ କହିଲା—ହେ ଶୃଗାଳ ତୁମେ ମୃତ୍ୟୁକୁ ଭୟ ନକରି ମୋତେ ପରାସ୍ତ କଲ ।

କାରଣ ଶାସ୍ତ୍ରରେ ଅଛି, ଯେ ମୃତ୍ୟୁକୁ ଇତର ପରିଣତି କହି, ଭବିତବ୍ୟକୁ ସ୍ୱୀକାର କରେ ସେ ହିଁ ମୃତ୍ୟୁକୁ ଜୟ କରେ ।

ମୃତ୍ୟୁ ସମ୍ପର୍କରେ ସର୍ବଶ୍ରେଷ୍ଠ ବିବରଣୀଟି ଯାହା ହେଉନା କାହିଁକି, ତାହାକୁ ଏକ ଏଣେ ତେଣେ ଘୂରି ବୁଲୁଥିବା ପୂର୍ଣ୍ଣଛେଦ ଭାବରେ ସ୍ୱୀକାର କରାଯାଇପାରେ । ଯେ କୌଣସି ଜୀବ ନିକଟରେ, ବେଳ ଅବେଳରେ ପହଞ୍ଚିବା ତା'ର ସ୍ୱାଭାବିକ ନୀତି । ଏଇ କ'ଣ ସୂଚେଇ ଦେଉନାହିଁ ଯେ, ଏଇ ମୁହୂର୍ତ୍ତର କାମ, ଆମକୁ ଏଇ ମୁହୂର୍ତ୍ତରେ ହିଁ ଶେଷ କରିଦେବା ଉଚିତ୍ !

ମରଣର ହାତ କେତେ ନିକଟ କେତେ ଆକସ୍ମିକ ସତେ !!

୧୨ । ୧୨ । ୮୪

# ସବୁଜ ଶବ୍ଦର ସ୍ୱର

ଆପଣ, ଏ ସରକାରୀ ଘର ଛାଡ଼ିଗଲେ, ଏ ଗଛମାନଙ୍କୁ କ'ଣ କରିବେ ?

"କ'ଣ ଆଉ କରିବି ! ଛାଡ଼ିଯିବି, ଯେମିତି ଛାଡ଼ି ଆସିଚି ଅନ୍ୟସବୁ ସ୍ଥାନମାନଙ୍କରୁ !"

ମୋର ସାଂସାରିକ ପ୍ରଶ୍ନ ପ୍ରତି ଏହା ଥିଲା ତାଙ୍କର ସାତ୍ତ୍ୱିକ ଉତ୍ତର ।

ବିଜୟବାବୁ, ମୃତ୍ତିକା ସଂରକ୍ଷଣ ଅଫିସର । ତାଙ୍କର ସମ୍ପର୍କ ଯେମିତି କେବଳ ମାଟିରେ; ମାଟିର ସବୁଜ ସାମ୍ରାଜ୍ୟରେ । ଜୀବନ ସହିତ ସବୁଜର ଆପଟ ଯେମିତି ମୂର୍ତ୍ତିମନ୍ତ ହୋଇଛି ତାଙ୍କ ପ୍ରତିଟି ଫୁଲକୁଣ୍ଡର ଆନ୍ତରିକତାରେ ।

ଘରସାରା କିସମ କିସମ ଫୁଲଗଛର ହାଟ । ଦୁଆରମୁହଁ ପାହାଚରୁ 'ଲଭି' ଇତାର ଅଲଙ୍କାର ଜଡ଼ି ରହିଚି କାନ୍ଥରେ । ଅନେକ ପ୍ରକାରର କାକ୍‌ଟସ୍ ଲଳିକି ଲଳି ଦେଶୀ ବିଦେଶୀୟ ସବୁଜଗଛର ପଟୁଆର ତା'ଙ୍କ ଦେହର ସବୁଜ ପୁଲ୍‌ଓଭର ପରି ଆବୋରି ରହିଛି ସାରାଘରକୁ ।

ଗୋଟିଏ ଗୋଟିଏ କିସମର ଅନେକ ଗଛ ସେ ସଜାଡ଼ି ରଖିଛନ୍ତି ଘରେ । ଉଦ୍ଦେଶ୍ୟ– ଯେ କେହି ସବୁଜପ୍ରେମୀଙ୍କୁ ଗଛଟିଏ ଉପହାର ଦେବା । ତାଙ୍କ ମତରେ 'ଭଲ ବହିଟିଏ ପଢ଼ିବାପରି, ଭଲ ଗଛଟିଏ ବଢ଼େଇବା ମଧ୍ୟ ଖୁବ୍ ଏକ ନିବିଡ଼ ଅନୁଭବ ।'

ଏସବୁ ଶୁଣିବାବେଳେ, ତାଙ୍କୁ ମୁଁ କେବଳ ଚାହୁଁଥିଲି ସଂଭ୍ରମରେ ।

ସତରେ, ଗଛର ସ୍ମୃତିଏ ଉପହାର ଦେବାଭଳି, କବିତାର ଭାବ କେତେ ଅଭାବନୀୟ ଆଜିର ଏ କଂକ୍ରିଟ୍ ଯୁଗରେ !

ଅନ୍ତଦିନ ତଳର ଅରଣ୍ୟ ଆଜିକାଲି ଦୁଃସ୍ୱପ୍ନ । ସଭ୍ୟକରିବା ନାମରେ ସହର ତୋଳିବା ନିଶାରେ, ସାରା ଦେଶକୁ ଯେମିତି ବଳାତ୍କାରରେ ସ୍ଲେଟ ଉପରେ ସ୍ଲେଟ ପକେଇ ଉଲଗ୍ନ କରି ଦିଆହୋଇଛି । ପୂର୍ବର ସେ ଶ୍ୟାମଳ ବନରାଜି, ଅଗନା ଅଗନି ବନସ୍ତ, ଗାଁ ମୁଣ୍ଡ ଆମ୍ବତୋଟା, ପଥପ୍ରାନ୍ତ ଧାଡ଼ି ଧାଡ଼ି ଗଛ କୁହୁକ ପରି ଆଜି ଅନ୍ତର୍ହିତ । ରାସ୍ତା ଧାରର କାଁ ଭାଁ ଆମ୍ବ, ଜାମ୍ବୁ କିମ୍ବା ବର, ଅଶ୍ୱତ୍ଥ ବୃକ୍ଷ ଅବଲୀଳାକ୍ରମେ କବନ୍ଧକୁ ରୂପାନ୍ତରିତ । ହାହାକାରର ହୃଦୟ ବିଦାରକ ଲହର ପରି ଅଧିକାଂଶ ଅଞ୍ଚଳ ଆଜି ଟାଙ୍ଗର ସହିତ ଚୁକ୍ତିବଦ୍ଧ ଯେମିତି !

ଗଛପତ୍ରର ସ୍ଥିତି ବିନା, ମଣିଷ କେତେ ଦୟନୀୟ କେତେ ସହଜ ମରଣମୁଖୀ, ସେ ସମ୍ପର୍କରେ ଆଲୋଚନା ଅନାବଶ୍ୟକ ।

ଜୀବନର ପ୍ରତିଟି ଉପାଦେୟତା ସହିତ, ବୃକ୍ଷଟିଏ ଜଡ଼ିତ । ଅମ୍ଳଜାନଠାରୁ ଆରମ୍ଭ କରି ଖାଦ୍ୟ, ବସ୍ତ୍ର, ବାସସ୍ଥାନ ଏବଂ ଏପରି କି କୋକେଇ ପର୍ଯ୍ୟନ୍ତ ମଣିଷର ପ୍ରତିଟି ଆବଶ୍ୟକତାର ଗହଳ ଚହଳ ରାସ୍ତା ଲମ୍ବିଯାଇଛି ଗଛମାନଙ୍କ ମେଳକୁ । ଏଣ୍ଡୁଡ଼ିଠାରୁ ଅନ୍ତିମ ଯାତ୍ରାଯାଏଁ, ମଣିଷ ନିଶ୍ଚିତ ଆବଶ୍ୟକତା ରଖୁଚି ବୃକ୍ଷମାନଙ୍କ ପାଖରେ । ଅଥଚ କେତେ ଅପରିଣାମଦର୍ଶୀ ଏ ଆଧୁନିକ ମଣିଷଟି ? ଶିଳ୍ପ ଏବଂ ସହର ପାଇଁ ଧ୍ୱଂସ କରି ଗ୍ଲାଲିଛି ଏ ଜୀବନ ସମ୍ପଦକୁ ।

ଗ୍ରୀଷ୍ମପ୍ରଧାନ ଦେଶମାନଙ୍କରେ ଘରର ଘରିକାନ୍ଥ ଯେତେ ଆବଶ୍ୟକ ନୁହେଁ, ତା'ଠାରୁ ହଜାରେ ଗୁଣେ ଆବଶ୍ୟକ ଗଛମାନଙ୍କର ଗହଳ । ମାନିବାକୁ ହେବ ଯେ, ସବୁ ପ୍ରଗତି ସତ୍ତ୍ୱେ, ଏ ଯାବତ୍ ତରୁଛାୟା ହିଁ ଏକମାତ୍ର ପ୍ରାକୃତିକ ଆଶାରୂପେ ଭରତରେ ସ୍ୱୀକୃତ । ସେଥିପାଇଁ କୁହାଯାଏ– ଛାଇ ତ ଛାଇ, ଗଛର ଛାଇ । ଅଶ୍ୱତ୍ ଗଛର ମୂଳେ ବୁଦ୍ଧଙ୍କର ବୁଦ୍ଧତ୍ୱପ୍ରାପ୍ତି । କଦମ୍ବ ମୂଳରେ କୃଷ୍ଣଙ୍କର ଆସର । ବଦରିକା ବୃକ୍ଷର ମେଳରେ ଶଙ୍କରାଚାର୍ଯ୍ୟଙ୍କର ବଦରିକାଆଶ୍ରମ;ବୃକ୍ଷ ଯେମିତି ସକଳ ଶାନ୍ତିର ସମାହାର ସ୍ୱରୂପ । ଚରମ ସାଧନା, ଏବଂ ଅଲୌକିକ କ୍ଷମତା ହାସଲ କରିଥିବା ମୁନିଋଷିମାନେ ସେଇଥିପାଇଁ ବୋଧେ ଆଶ୍ରାକରି ନେଇଥିଲେ ବୃକ୍ଷମାନଙ୍କୁ । ଯେମିତି ରବୀନ୍ଦ୍ରନାଥ ଠାକୁର ଅନୁଭବ କରିଥିଲେ ଯେ, ଜୀବନର ସଫଳ ଶିକ୍ଷା, ଏଇ ବୃକ୍ଷଛାୟାମାନଙ୍କର ମେଳରେ ହିଁ ଅଧିକ ଋଦ୍ଧିମନ୍ତ ହେବ– ଅତଏବ ଶାନ୍ତିନିକେତନର ସୃଷ୍ଟି ।

କିନ୍ତୁ ଏବେ କାହିଁ ସେ ଅନୁଭବ ? କାହାନ୍ତି ସେ ବୃକ୍ଷବନ୍ଧୁମାନେ ?

ଅରଣ୍ୟ ବୋଲି କହିଲେ ଆମେ ହୁଏତ ଚିତ୍ରଟିଏ ଦେଖାଇ ଦେଇପାରୁ !

ମାତ୍ର ସୌଭାଗ୍ୟର କଥା, କିଛିଦିନ ହେବ ମୃତ୍ତିକା ସଂରକ୍ଷଣ ବିଭାଗ, ବନ ବିଭାଗ ଏବଂ ପରିବେଶ ବିଭାଗ ଆଦି କେତେକ ସରକାରୀ ସଂସ୍ଥା ଏ ଅରଣ୍ୟ ଅନଟନକୁ ସଜାଡ଼ିବାକୁ ତତ୍ପର । ସଫଳତାର ଅନୁପାତ ଯେତେ କମ୍ ହେଉ ନା କାହିଁକି, ଗଛପତ୍ରଙ୍କ ପ୍ରତି ମଣିଷର ଦୃଷ୍ଟିଭଙ୍ଗୀ ଯେ ସଂପ୍ରତି ବଦଳୁଛି, ସେ କଥା ଆଶା କରିବା ଉଚିତ୍ ।

ଏଇଭଳି ଏକ ପ୍ରଚେଷ୍ଟାର ସ୍ୱର, କଟକ ଟାଙ୍ଗୀ ନିକଟସ୍ଥ ବିଶ୍ୱନାହା-କାଣୀ ଅଞ୍ଚଳ । ଦିନେ ଜଙ୍ଗଲରେ ଭରପୂର ଏ ଅଞ୍ଚଳଟି ସମସାମୟିକ କାଳରେ ହୋଇ ଯାଇଥିଲା ଟାଙ୍ଗର; କିନ୍ତୁ ଏବେ ପୁଣିଥରେ ସେଠି ଅରଣ୍ୟର ପ୍ରଚେଷ୍ଟା । ହଜାର ହଜାର ନଡ଼ିଆଗଛ ସହିତ, ଅନେକ ଅନେକ ପିଜୁଳି, ସିମରେବା ଗ୍ଲାଉକା ଆଦି ଜଳତିରୋଧକ୍ଷମ ବୃକ୍ଷ ରୋପିତ ହୋଇଛି ସେଠି । ସାତ-ଆଠ ବର୍ଷର ଉଦ୍ୟମ ଭିତରେ ସବୁଜ ଶବ୍ଦର ସ୍ୱର ଗହଗହ ହୋଇ ଶୁଣାଗଲାଣି ସେଠାରେ । ସୁନ୍ଦର ବୃକ୍ଷରାଜି, ସୁନ୍ଦର ଜଳାଶୟ, ସୁନ୍ଦର ବଗିଚ୍ଚା—ପାହାଡ଼ କୋଳରେ ହସି ଉଠିଲାଣି ସବୁଜିମା ।

ବିଶ୍ୱନାହାକାଣୀ ଅଞ୍ଚଳର ଅତିଥି ଗୃହର ଘାସ ଗାଲିଚ୍ଚା ଉପରେ ବସିଥିଲାବେଳେ ଜଣେ ସମ୍ମାନିତ ବନ୍ଧୁ ଦୃଷ୍ଟି ଆକର୍ଷଣ କଲେ ସମସ୍ତଙ୍କର—ହେଇ ଶୁଣନ୍ତୁ ! ଦୁଇ କିଲୋମିଟର ଦୂର ପାହାଡ଼ର ସେ ପଟୁ ଶୁଭୁଥିଲା ଗୋଟିଏ ଚଢ଼େଇର ଟିଉଁଟିଉଁ ସ୍ୱର, ଟିକିଏ ପରେ ତିନି କିଲୋମିଟର ଦୂର ଏପଟ ପାହାଡ଼ରୁ ପ୍ରତ୍ୟୁତ୍ତର ଦେଉଥିଲା ଆଉ ଗୋଟିଏ ସମଜାତୀୟ ପକ୍ଷୀ, ସେଇ ଟିଉଁଟିଉଁ ସ୍ୱରରେ । ବୋଧହୁଏ ମିଳନ ପାଇଁ ଆହ୍ୱାନ ।

କିଏ କହିବ ବିଜୟ ବାବୁଙ୍କ ପରି ବ୍ୟକ୍ତିତ୍ୱର ସବୁଜ ସ୍ୱର ଏବଂ ବିଶ୍ୱନାହାକାଣୀ ଅଞ୍ଚଳର ସବୁଜ ଶବ୍ଦଲିପି ଅଚିରେ ସାରା-ଦେଶରୁ ଅବିକଳ ପ୍ରତ୍ୟୁତ୍ତର ନ ପାଇବ ବୋଲି । ସବୁଜହିଁ ସତ୍ୟ ନୁହେଁ କି ?

୧୯ । ୧୨ । ୮୪

# ଏ ଯେଉଁ ଓଡ଼ିଶା

୧୯୪୮ ମସିହା ପୂର୍ବରୁ ଶାସନ ଅନୁସାରେ ଓଡ଼ିଶା ଥିଲା ଦୁଇଟି । ଗୋଟିଏ ବ୍ରିଟିଶ ଓଡ଼ିଶା ଓ ଅନ୍ୟଟି ଗଡ଼ଜାତ ଓଡ଼ିଶା । ସମଗ୍ର ଓଡ଼ିଶାର ଭାଗ୍ୟବିଧାତା ବ୍ରିଟିଶ ସରକାର ହୋଇଥିଲେ ମଧ୍ୟ, ଗଡ଼ଜାତମାନଙ୍କରେ ରାଜା ହିଁ ଥିଲେ ଶାସକ ।

ଓଡ଼ିଶା, ଉଡ୍ର, ଉତ୍କଳ ବା କଳିଙ୍ଗ ଥିବାବେଳୁ ରାଜତନ୍ତ୍ର ଶାସନ ଥିଲା ପ୍ରଚଳିତ । କଳିଙ୍ଗ ରାଜା ଶ୍ରୁତାୟୁ କୌରବଙ୍କ ପକ୍ଷରେ ରହିଥିଲେ ଓ ଭୀମଙ୍କ ଦ୍ୱାରା ସପୁତ୍ର ନିହତ ହୋଇଥିଲେ ବୋଲି ମହାଭାରତରେ ବର୍ଣ୍ଣିତ ଅଛି । ବିଷ୍ଣୁ ପୁରାଣରୁ 'ଗୁହ' ନାମକ ରାଜା କଳିଙ୍ଗ ଶାସନ କରୁଥିଲେ ବୋଲି ପ୍ରମାଣ ମିଳେ ।

ରାଜତନ୍ତ୍ରର ସ୍ରୋତ ହିଁ ପ୍ରାଚୀନ ଉତ୍କଳରୁ ଆଧୁନିକ ଓଡ଼ିଶା ପର୍ଯ୍ୟନ୍ତ ହୋଇଥିଲା ପରିବ୍ୟାପ୍ତ । କିନ୍ତୁ ନିକଟ ଅତୀତରେ ଏଇ ଗଡ଼ଜାତମାନଙ୍କର ଶାସନ ପ୍ରଣାଳୀ ଓ ସାମାଜିକ ସ୍ଥିତି ସମ୍ପର୍କରେ କେତେବା ଆମେ ଜାଣୁ !

ଓଡ଼ିଶାର ଛାତ୍ରମାନଙ୍କୁ ଓଡ଼ିଶା ଇତିହାସ ସମ୍ପର୍କରେ ଜାଣିବା ପାଇଁ ସୁଯୋଗ ବା କେତେ ?

ଖରାପ କଥାଟିକୁ ଖରାପ କଥା ବୋଲି ଜାଣିଲେ ଯାଇଁ, ଭଲଟି ସମ୍ପର୍କରେ ସଚେତନ ହୋଇ ହୁଏ । ରାଜତନ୍ତ୍ରର ଭୟାବହତା ବିଷୟରେ ଜାଣିଥିବା ଲୋକ ହିଁ ଗଣତନ୍ତ୍ରରେ ବିଶ୍ୱାସ ରଖିବ । ନଚେତ୍ ଗଣତନ୍ତ୍ର ରାଜତନ୍ତ୍ରରେ ପରିବର୍ତ୍ତିତ ହୋଇଯିବ ଦିନେ ।

ମାତ୍ର କଥା ହଉଚି କେତେଜଣ ଜାଣିଛନ୍ତି, ଓଡ଼ିଶାରେ ଗଡ଼ଜାତର କଥା ? କେତେଜଣ ଯୁବକ ?

ରଜା ଆଜି ଯାହା ଉପରେ ରୋଷ ପ୍ରକାଶ କରି ଗାୟକ ପଦରୁ ଘୋଡ଼ା ସଇସ ପଦକୁ ଅବନତି କରାଇଛନ୍ତି, କାଲି ସେଇ ଲୋକ ଉପରେ ଯଦି ପ୍ରସନ୍ନ ହୁଅନ୍ତି ତେବେ ତାକୁ କରାଇଦେଇ ପାରନ୍ତି ରାଜ୍ୟର ପ୍ରଧାନ ବିଗ୍ରହପତି (ଢେଙ୍କାନାଳ) । କୌଣସି କାର୍ଯ୍ୟ ପାଇଁ ଯେ ଜେହି ଯେମିତି ପାରଙ୍ଗମ । ଲୋକମାନେ ରଜାଙ୍କୁ ଚଳନ୍ତି ବିଷ୍ଣୁ ବୋଲି ମାନିବାକୁ ବାଧ୍ୟ । ରଜାଙ୍କର ନିଦ୍ରା ଯେତେବେଳେ ଭାଙ୍ଗୁଚି ଭାଙ୍ଗୁ, ମାତ୍ର ଭୋର ପାଞ୍ଚଟା ହେଲା ବୋଲି ଘଣ୍ଟା ବାଜିବ ଗଡ଼ରେ (ଖଣ୍ଡପଡ଼ା) । ନିଜ କୁଡ଼ିଆରେ ମାଟି-କାନ୍ଥରେ କେହି ପଦ୍ମଫୁଲର ଝୋଟିଟିଏ ଆଙ୍କିବା ମଧ୍ୟ ମନା । ରଜାଙ୍କ କାନ୍ଥରେ ସିନା ପଦ୍ମଫୁଲର ଚିତ୍ର ଶୋଭା ପାଇବ, ଆଉ କ'ଣ ଏ ନିମକ ହାରାମ ମଚ୍ଛିମୁଣ୍ଡିଆ ପ୍ରଜାଙ୍କ କାନ୍ଥରେ ? କେଡ଼େ ବହପ ! (ଦଶପଲ୍ଲା) ରଜା କେବଳ ନିଶ ରଖିବେ, କେହି ପ୍ରଜା ଅମାନ୍ୟ କରି ନିଜେ ନିଶ ରଖିଲେ, ସିମୁଣାରେ ଗୋଟି ଗୋଟି କରି ଉପୁଡ଼ା ହେବ ନିଶ୍ଚେ (ତାଳଚେର) ।

ଆଜି ଆଶ୍ଚର୍ଯ୍ୟ ଲାଗୁଥିବା ଏଇଭଳି ହଜାର ହଜାର ଘଟଣାରେ ପୁଷ୍ଟ, ଗଡ଼ଜାତଗୁଡ଼ିକ ଆଉ ନାହାନ୍ତି । ମାତ୍ର ଲୋକମୁଖେ ପ୍ରଚାରିତ ଏବଂ ସେ ସମୟରୁ ଜୀବିତଥିବା ବୟସ୍କମାନଙ୍କ ସ୍ମୃତିରେ ସେସବୁ ଏବେ ମଧ୍ୟ ଜୀବନ୍ତ । ଓଡ଼ିଶା ଗଡ଼ଜାତମାନଙ୍କର ପୁଙ୍ଖାନୁପୁଙ୍ଖ ଇତିହାସର ବିବରଣୀ ମୋଟେ ନାହିଁ କହିଲେ ଚଳେ । କଥା ପଦକେ ଜୀବନ ହରାଇବାକୁ ପଡ଼ୁଥିବା ଶାସନରେ କିଏବା ସାହସ କରିବ, କିଛି ଲେଖିବା ପାଇଁ—ଏଇ ବୋଧେ ଥିଲା ତା'ର କାରଣ ।

ଗୋରାମାନେ ଥିଲେ ରଜାମାନଙ୍କର ପାଳନକର୍ତ୍ତା, ତଥାପି କେହି କେହି ସାହେବ ସେ ଅନ୍ଧାର ଶାସନର ବିବରଣୀ ଲେଖିବାକୁ ଛାଡ଼ି ନାହାନ୍ତି । ମାତ୍ର ଆମ ଚଳଣି, ଆମ ଭାଷା ବୁଝୁ ନଥିବା ବିଦେଶୀମାନେ କେତେ ବା ଜାଣନ୍ତି, ସେ ବିଧା ଗୋଇଠାର ଫରକକୁ ।

ତଥାପି ସେ ସମୟର ଓଡ଼ିଶାରେ କିଛି କିଛି ଆଞ୍ଚଳିକ ଇତିହାସ ଓଡ଼ିଆମାନଙ୍କ ଦ୍ୱାରା ଲେଖାହୋଇ ନଥିଲା ବୋଲି ନୁହେଁ । ହେଲେ ସେସବୁ ସ୍ତୁତି ମାତ୍ର, ରଜାଙ୍କ ଉଦ୍ଦେଶ୍ୟରେ କାଗଜ କଲମର ଅର୍ଚ୍ଚନା ।

ଏଇଭଳି ଗୋଟିଏ ପୁସ୍ତକ 'କେନ୍ଦୁଝର' । ତଦାନୀନ୍ତନ କେନ୍ଦୁଝର ଷ୍ଟେଟ୍ ସ୍କୁଲ ସବ୍‌ଇନ୍‌ସ୍ପେକ୍ଟର ଶ୍ରୀ କ୍ଷେତ୍ରମୋହନ ମିଶ୍ର, ଏଲ୍.ଟି.ଙ୍କ ଦ୍ୱାରା ସଂକଳିତ ଓ ପ୍ରକାଶିତ । ପ୍ରକାଶକାଳ ୧୯୩୨ । ପୁସ୍ତକଟି "ମହାମହିମ,

ଦିନକର-କୁଳଚନ୍ଦ୍ର, ପ୍ରଜାବତ୍ସଳ ଶ୍ରୀଯୁକ୍ତ କେନ୍ଦୁଝରାଧିପ ଶ୍ରୀ ଶ୍ରୀ ଶ୍ରୀ ବଳଭଦ୍ର ନାରାୟଣ ଭଞ୍ଜଦେବ...ମହୋଦୟଙ୍କ କରକମଳରେ" ହୋଇଛି ଉତ୍ସର୍ଗୀକୃତ ।

ଏଭଳି ପୁସ୍ତକମାନଙ୍କରେ ଐତିହାସିକ ସତ୍ୟ ଯାହା ଥାଉନା କାହିଁକି, ଅତୀତ ସମ୍ପର୍କରେ ଯେ ଅନେକ ମନୋହର ଘଟଣାବଳୀ ଓ କିମ୍ବଦନ୍ତୀ ନିହିତ ଅଛି, ସେ କଥା ନିଶ୍ଚିତ । ଏଠାରେ ସେଇଭଳି ଏକ ଘଟଣାର ଅବତାରଣା କରାଯାଇପାରେ ।

ଶିମୂଳିପାଳ ପର୍ବତ ମୟୂରଭଞ୍ଜର ଅନ୍ତର୍ଗତ । ଥରେ କାର୍ତ୍ତିକେୟ ନିଜର ବାହନ ମୟୂରକୁ ବଳଙ୍ଗ ନଦୀ କୂଳରେ ଛାଡ଼ିଦେଇଥିଲେ । ଏହି ମୟୂରର ଚିତ୍କାରରେ ବନ୍ୟ ମୟୂରଗୁଡ଼ିକ ରୁଷ୍ଟ ହୋଇଯିବାରୁ କୌଣସି ଶବର ସେମାନଙ୍କୁ ବାଣମାରିବା ନିମନ୍ତେ ଉଦ୍ୟତ ହେଲା । ମୟୂରଭଞ୍ଜ ଅନ୍ତର୍ଗତ ହେମପୁରର ରାଜପୁତ୍ର ଜୟନ୍ତ ଶିକାର କରିବା ନିମନ୍ତେ ବନ-ମଧ୍ୟରେ ବୁଲୁଥିଲେ । ସେ ମଧ୍ୟ ମୟୂରମାନଙ୍କ ଚିତ୍କାର ଶୁଣି ସେଠାରେ ଉପସ୍ଥିତ ହେଲେ । ଗୋଟିଏ ଅତି ଚମତ୍କାର ମୟୂରକୁ ବାଣୁଆ ବାଣ ମାରିବାକୁ ଉଦ୍ୟତ ହେଉଥିବାର ଦେଖି ଦୟାପରବଶ ହୋଇ ସେ ତାହା ଆଗରେ ଠିଆ ହୋଇଗଲେ । ସେ ମୟୂର ବଞ୍ଚିଲା ଏବଂ କାର୍ତ୍ତିକେୟ ସେଠାରେ ଉପସ୍ଥିତ ହୋଇ ଜୟନ୍ତକୁ ବରଦାନ କଲେ । କାର୍ତ୍ତିକେୟ ମୟୂର ବାହନରେ ଗ୍ଭଲିଯିବା ସମୟରେ ଗୋଟିଏ ପର ସେହି ମୟୂର ଡେଣାରୁ ଖସିପଡ଼ିଲା । ଜୟନ୍ତ ତାହାକୁ ନେଇ ନିଜ ବାପାଙ୍କୁ ଦେଲେ ଏବଂ ସମସ୍ତ ଘଟଣା ପ୍ରକାଶକଲେ । ଜୟନ୍ତଙ୍କ ପିତା ସେହି ପରଟିକୁ ନିଜ ମୁକୁଟରେ ଲଗାଇଲେ । ଏହି ଦିନଠାରୁ ତାହାଙ୍କ ବଂଶକୁ ମୟୂରଧ୍ୱଜ ବଂଶ କୁହାଗଲା ଏବଂ ମୟୂର ମାରିବା ରାଜ୍ୟରେ ବନ୍ଦ ହେଲା ।

ପୂର୍ବରୁ ମୟୂରଭଞ୍ଜ ଓ କେନ୍ଦୁଝରେ ଥିଲା ଏକ । ମୟୂରଧ୍ୱଜ ଥିଲେ ଅନାର୍ଯ୍ୟମାନଙ୍କର ରାଜା । ତାଙ୍କୁ ଆଦିସିଂହ ପରାସ୍ତ କରିଥିବାରୁ, ଓଡ଼ିଶାର ମହାରାଜା ତାହାଙ୍କୁ ପୁରୁଷାନୁକ୍ରମିକ ଭଞ୍ଜ ଉପାଧି ପ୍ରଦାନ କରିଥିଲେ । ଏହି ସମୟଠାରୁ ମୟୂରଭଞ୍ଜ ଓ କେନ୍ଦୁଝର ରାଜାମାନେ 'ସିଂହ' ପରିବର୍ତ୍ତରେ 'ଭଞ୍ଜ' ଉପାଧିରେ ଭୂଷିତ ହୋଇଅଛନ୍ତି । ମୟୂରଧ୍ୱଜ ରାଜାଙ୍କର ସନ୍ତକ ଥିଲା ମୟୂର; ତେଣୁ ମୟୂର ମଧ୍ୟ କେନ୍ଦୁଝର ଓ ମୟୂରଭଞ୍ଜ ରାଜବଂଶର ଚିହ୍ନ ହୋଇ ରହିଲା ।

ଏବେ ଗଡ଼ଜାତମାନଙ୍କରୁ ମିଳୁଥିବା କାଁ-ଭାଁ କାଗଜପତ୍ରରେ ସେକାଳର ସମ୍ପୂର୍ଣ୍ଣ ସାମାଜିକ ଚିତ୍ର ହୁଏତ ନାହିଁ, କିନ୍ତୁ ଯାହା କିଛି ରାଜା-ରାଜୁଡ଼ା ଅତ୍ୟାଚାର ଓ କିମ୍ବଦନ୍ତୀ ଅଛି, ତାହା ଅବଶ୍ୟ ସଂଗ୍ରହଣୀୟ ।

୨୭ । ୧୨ । ୮୭

## ସୁନା ଘୋଉଷିଆ ସକାଳ

ନୀଳାମ୍ବର ବାବୁ, ଶେଯ ଛାଡ଼ିବାର ବେଳ ସେଇଟା ନୁହେଁ । ଏତେ ଭୋରରୁ କେଉଁ ଥିଲବାଲା ଲୋକ ଶେଯ ଛାଡ଼େ ଯେ !

ଡେରିଯାଏଁ ଶେଯରେ ପଡ଼ିରହିବା ଏକ ଆଭିଜାତ୍ୟ । କିଛି କାମରେ ଆସିଥିବା ଇତର ଲୋକଟି ଦୁଆରେ ପହଞ୍ଚି ଜାଣିବ—ବାବୁ ଏଯାଏଁ ଉଠି ନାହାନ୍ତି । ସକାଳ ଆଠଟା ନହେଲେ କ'ଣ ବାବୁ ଉଠନ୍ତି ?

ନୀଳାମ୍ବର ବାବୁ ଇଞ୍ଜିନିୟର । ସେ କ'ଣ ଗରିବ ରିକ୍ସାବାଲା ଯେ କୁଆ କା' ନ କରୁଣୁ ଉଠିବସି ପେଟ ଖଣ୍ଡକ ପାଇଁ ଚିନ୍ତା କରିବେ ? ଅତଏବ ସେ ଉଠନ୍ତି ଡେରିରେ ।

କିନ୍ତୁ ସକାଳୁ ସକାଳୁ ବେହେରା ଚା' ପହଞ୍ଚାଇ ଦେବାରୁ ମୋତେ ତାଙ୍କୁ ଉଠେଇ ଦେବାକୁ ପଡ଼ିଲା । ହାଇ ମାରି ଉଠିଲେ ସେ । ବିରକ୍ତି ମିଶା ଓଠରେ କପ୍‌ର ଧାର ଛୁଆଁଇ ପିଇବା ଆରମ୍ଭ କଲେ ।

ଉଭୟଙ୍କୁ ଏକ ପାହାଡ଼ ନିକଟର ଡାକବଙ୍ଗଳାରେ ରାତ୍ରି ଯାପନର ସୁଯୋଗ ମିଳିଥିଲା । ନୀଳାମ୍ବର ବାବୁ ମୋର ପୂର୍ବ ପରିଚିତ । ଅତଏବ ସେ ଦିନ କୌଣସି ସଙ୍କୋଚ ନ ରଖି ମୁଁ ତାଙ୍କୁ ଆମନ୍ତ୍ରଣ କରିଥିଲି ଚା' ପାଇଁ ।

ଶୀତ ସଙ୍କଟରେ ଗାଉଁଲୀ କିଶୋରୀଟିଏ ପୋଖରୀ ତୁଠରୁ ଉଠି-ଆସି ସାଙ୍ଗମାନଙ୍କୁ ଅପେକ୍ଷାକରିବା ପରି ଥର ଥର ମୁଦ୍ରାରେ କମ୍ପୁଥିଲେ, ବଙ୍ଗଳାର ହତାକୁ ବେଷ୍ଟନ କରିଥିବା ପ୍ରତିଟି ଦେବଦାରୁ ବୃକ୍ଷ । କାନ

କୁହରରେ ଫିସ୍ ଫିସ୍ କଥା ପରି ସୁଲୁ ସୁଲୁ ପବନ । ଝର୍କା ସେପଟେ ପାହାଡ଼ ସନ୍ଧିରୁ ଆଲୋକର ମନ୍ତ୍ର ଉଚ୍ଚାରଣ କରୁଥିବା ସାମ୍ୟବାଦୀ ସୂର୍ଯ୍ୟ । ସାଗ ପରିବେଶରେ ଘେରି ରହିଥିଲା ମନ୍ଦିର ଭିତରର ଝୁଣାଧୂପ ଭଳି କୁହୁଡ଼ିର ଧୂମ । ବାରଣ୍ଡା ସାଗ ଖେଳି ବୁଲୁଥିଲା ଅନୂଢ଼ା ଆମ୍ବ ବଉଳର ଚୁନା ଚୁନା ବାସ୍ନା ।

ନୀଳାମ୍ବର ବାବୁଙ୍କୁ ମୁଁ ପଚାରି ଦେଲି—କେମିତି ଲାଗୁଚି ଆଜିର ଏ ସକାଳ ?

ପ୍ରଶ୍ନଟିର ସରଳତାରେ ଆଦୌ ଉଲ୍ଲସିତ ହେଲେ ନାହିଁ ସେ । ଓଲଟି ଛଳଛଳ କରି ମୋ ମୁହଁକୁ ଚାହିଁ ରହିଲେ । ସକାଳ କ୍ରମଶଃ ପକ୍ଷ ବିସ୍ତାର କରୁଥିଲା ଆଲୋକର ଆରୋହଣ ପାଇଁ ।

ଇଞ୍ଜିନିୟର ବନ୍ଧୁ ବହୁ ସମୟ ସହରରେ କଟାନ୍ତି । କେତେବେଳେ ବା କେମିତି ବାହାରକୁ ଆସିଲେ, ସକାଳ, ପ୍ରୌଢ଼ ହେବା ପୂର୍ବରୁ ନିଦ ତୁଟେନା ତାଙ୍କର । ଉଲଗ୍ନ ପ୍ରକୃତିର ସୁନା ସୋରିଷିଆ ରୂପ ତା'ଙ୍କ ଜୀବନ ଚକ୍ରବାଳରେ ଉଦିତ ହେବାର ସମ୍ଭାବନା କେବେ ନଥାଏ ତେଣୁ ।

ରାତିରେ ଶୋଇବା ପୂର୍ବରୁ ସେ ମୋତେ ସୂଚେଇ ଦେଇଥିଲେ : "ସତରେ ସକାଳୁ ଉଠିବା ଖୁବ୍ ବିରକ୍ତିକର । ସକାଳୁ ଉଠିବା କଥାଟାକୁ ଆଦୌ ସହ୍ୟ କରିପାରେନା ମୁଁ ।"

ଏସବୁ ଜାଣିବା ସତ୍ତ୍ୱେବି ସକାଳୁ ସକାଳୁ ତାଙ୍କୁ ଉଠାଇ ମୁଁ ଅନୁରୋଧ କଲି, ଆସନ୍ତୁ ବାହାରୁ ଟିକିଏ ବୁଲି ଆସିବା । ଟିକିଏ ଇତସ୍ତତଃ ହୋଇ, ସିଗାରେଟ୍ ଖଣ୍ଡେ ଲଗାଇ ବାହାରି ପଡ଼ିଲେ ସେ ।

ଆମ ଆଗରେ ପାହାଡ଼ । ଖଡ଼ିଗାର ପରି ସରୁ ରାସ୍ତା । ଦୁଇ କଡ଼େ ଗଛପତ୍ରର କୋଳାହଳ । ପକ୍ଷୀମାନଙ୍କର କାକଳୀ । ସୋରିଷ ଫୁଲର ସୁନା ରଙ୍ଗ ଝରି ପଡ଼ୁଚି ଆକାଶରୁ ।

କିଛି ବାଟ ଚାଲିବା ପରେ ନୀଳାମ୍ବର ବାବୁ ସ୍ୱଗତୋକ୍ତି କଲାଭଳି କହିଲେ—ବାଃ ଚମତ୍କାର ଲାଗୁଚିତ ସକାଳଟା ! ଆପଣ କ'ଣ ସବୁଦିନେ ଏତେ ସକାଳୁ ଉଠନ୍ତି ? ମୁଁ କିନ୍ତୁ ପାରେନା ! ରାତିରେ ସବୁବେଳେ ଶୋଇବାକୁ ଡେରି, କାରଣ ଡେରିରେ ଖାଇବା ଆମ ଘରର ଅଭ୍ୟାସ ।

ମୁଁ ବୁଝୁଥିଲି; ଡାକ୍ତର ମର୍ଣ୍ଣିଂ ଓ୍ୱାକ୍ ପାଇଁ ନ କହିବା ପର୍ଯ୍ୟନ୍ତ, ଏ ନୀଳାମ୍ବର ବାବୁମାନଙ୍କର ସକାଳ ଦର୍ଶନ ହୋଇପାରେନା ।

ଏଇଭଳି ଚାଲୁଥିଲା ବେଳେ, ଆମ କଥାବାର୍ତ୍ତାର ସ୍ୱରକୁ ତୁଚ୍ଛକରି ଉଡ଼ିଗଲେ ଦୁଇଟି ପକ୍ଷୀ । ଉଡ଼ିଯାଇ ଅଳ୍ପ ଦୂରରେ ପଣସ ଗଛରେ ବସି ପଡ଼ିଲେ । ମୁଁ ପଚାରିଲି, କି ପକ୍ଷୀ ସେ ଦୁଇଟି ଜାଣନ୍ତି ? ସେ ଉତ୍ତର

କଲେ—ଚିହ୍ନା ଚିହ୍ନା ପକ୍ଷୀ, କିନ୍ତୁ ନାଁ କହିପାରିବିନି । ପିଲଦିନେ ଦେଖିଥିବି ନିଶ୍ଚେ ।

ମୁଁ କହିଲି, ଏ ପକ୍ଷୀ ଦୁଇଟି ହଳଦୀବସନ୍ତ । ବସନ୍ତ ଋତୁରେ ହିଁ ଏମାନେ ଅଧିକ ତତ୍ପର । ଦେଖନ୍ତୁ—ସକାଳ କେତେ ଲୋଭନୀୟ ହୋଇ-ପାରେ ଏ ପକ୍ଷୀଙ୍କର ଗହଣରେ ! ଏ ସକାଳ ଯେମିତି ହଳଦୀବସନ୍ତର ବିସ୍ତୃତ ଏକ ଅଲୌକିକ ଡେଣା ।

ପ୍ରଥମ ଥର ପାଇଁ ଆଧୁନିକ କବିତା ଧାଡ଼ିଏ ବୁଝିବାକୁ ଆରମ୍ଭ କରିବା ପରି ନୀଳାମ୍ବର ବାବୁ ଦେଖାଗଲେ ହସ ହସ ।

ହଳଦୀବସନ୍ତ ସମ୍ପର୍କିତ କାହାଣୀଟି ମୁଁ ତା'ଙ୍କୁ ଶୁଣେଇବାକୁ ଆରମ୍ଭ କଲି । —ଏଇଭଳି ଏକ ବସନ୍ତ ଋତୁର ବ୍ରୀଡ଼ାନତ ସକାଳରେ ଯଶୋଦା, ବଟାହଳଦୀ ମାଖୁ ଦେଉଥିଲେ ଶିଶୁ କୃଷ୍ଣଙ୍କ ଦେହରେ । କୃଷ୍ଣଙ୍କର ସମ୍ଭବତଃ ଗୁରୁଣ୍ଡିଗୋପାଳ ଅବସ୍ଥା ସେତେବେଳେ । ଅଝଟ କୃଷ୍ଣ ହଳଦୀ ନ ଲଗେଇବା ପାଇଁ କଟାଳ କରୁଥିବା ସମୟରେ, ବସିପଡ଼ିଲା ଏଇ ପକ୍ଷୀଟି ପାଖରେ । ପକ୍ଷୀଟି ଥିଲା ସମ୍ପୂର୍ଣ୍ଣ କଳା । ହଳଦୀ ସର ସର ହାତରେ ଠୁକୁ ଠୁକୁ ଚଳମଳ କୃଷ୍ଣ ଧରି ପକେଇଥିଲେ ପକ୍ଷୀଟିକୁ । ସେଇଦିନୁ ହାତରେ ଲାଗିଥିବା ଅଂଶଟି ହୋଇ ରହିଲା ହଳଦୀରଙ୍ଗ । ଅନ୍ୟ ଅଂଶ ତକ କଳା ।

ଈଶ୍ୱର ସମ୍ପର୍କିତ ମଣିଷର କଳ୍ପନା ବିଳାସ ସତରେ କେତେ ପ୍ଲାବିତ ଏ ସଂସାରରେ, ପକ୍ଷୀଠାରୁ ପତଙ୍ଗ ପର୍ଯ୍ୟନ୍ତ; ପଶୁଠାରୁ ପଶାଖେଳ ପର୍ଯ୍ୟନ୍ତ ! ଶ୍ରୀରାମଙ୍କର ଆଙ୍ଗୁଠି ଆଉଁସା ଦାଗ, ଗୁଣ୍ଡୁଚିମୂଷା ଦେହରେ କେତେ ମାର୍ମିକ ସତେ !

ନୀଳାମ୍ବର ବାବୁ ଟାଟାନଗରକୁ ଫେରିବା ରାସ୍ତାରେ କହୁଥିଲେ— ସତକଥା, ଏ ସହରୀ ଜୀବନରେ ସେ ସକାଳର ସମ୍ଭାବନା କାହିଁ ? କୁଡ଼ କୁଡ଼ କୋଠାଘରର ଟାଙ୍ଗର ହଇଚଇ ଭିତରେ କାହିଁ ସେ ହଳଦୀବସନ୍ତ; କାହିଁ ସେ ସୁନା ସୋରିଷିଆ ଖଗ ? ଜୀବନ ପଛରେ ଦୌଡ଼ୁଥିବା ବ୍ୟସ୍ତ ମଣିଷଟିର ସକାଳ ପାଇଁ ସମୟ ବା କେତେ ?

ସହରରେ ସକାଳ ଯେମିତି ମଇଳା ମଣିଷର କାଉଁଳିଆ ଆଖି । ଆଃ ସକାଳ !

ହଳଦୀବସନ୍ତ ବା ସୁନାଖଗ ନ ହେଲେ ମଧ୍ୟ ନୀରବତାକୁ ବା ଶୂନ୍ୟକୁ ଶୁଣିବାପରି ଏଠାରେ ସକାଳକୁ ଶୁଣିବା ପାଇଁ ବ୍ରାହ୍ମମୁହୂର୍ତ୍ତକୁ ଅପେକ୍ଷା କରଯାଇ ପାରେ । ସକାଳକୁ ଛୁଇଁବା ପାଇଁ ରାତ୍ରିର କୋମଳ ଦୈର୍ଘ୍ୟକୁ ନୀରବ ଆଖିପତାରେ ଛିନ୍ନ କରି ଦେଇ ଅନାଗତ ଆଲୋକକୁ ହାତ ପତେଇ ମୌନମୁଦ୍ରାରେ କରଯାଇପାରେ ଆଲିଙ୍ଗନ ।

ମାତ୍ର ରାତ୍ରି ଏଠି କେତେ ନୀରବ ଯେ, ସକାଳର ମନ୍ତ୍ରଧ୍ୱନି ଅମୃତ ଭଳି ମନେ ହେବ ! ରାତ୍ରି ଏଠି କେତେ ଅନ୍ଧାର ଯେ ସକାଳର ରଙ୍ଗ ସୁନାରଙ୍ଗ ଭଳି ପ୍ରତ୍ୟେ ହେବ ଆଖିକୁ ।

ଶିଳ୍ପ ସହର ଗୁଡ଼ିକ, କେଉଁ ଦୂର ପାହାଡ଼ର ସବୁଜ କଟିବନ୍ଧ ଯେ ?

୩ । ୧ । ୮୫

# ପରିହାସଟିଏ ଲୋଡ଼ା

"ଜୀବନ ଦୁଃଖପୂର୍ଣ୍ଣ । ଦୁଃଖର କାରଣ କାମନା । ନୀତିମୟ ଜୀବନ ଯାପନ କଲେ ନିର୍ବାଣ ପ୍ରାପ୍ତି ହୁଏ "।

ଏଭଳି ବୌଦ୍ଧ ଚିନ୍ତାର ପରିସର ବାହାରେ ଯେଉଁ ଜୀବନଟି କଥା ସ୍ମରଣ କରାଯାଇପାରେ ତାହା ସାଂସାରିକ ଜୀବନ । କୋଠାବାଡ଼ିର ଜୀବନ, ହାଣ୍ଡି ଚଟୁର ଜୀବନ ବା ସାଧାରଣ ଶାସିତ ଜୀବନ । ସବୁ ମଣିଷ ନିର୍ବାଣ ପାଇଁ ଚିନ୍ତା କଲେ ପୃଥିବୀ ଭିନ୍ନ ରୂପ ନିଅନ୍ତା; କିନ୍ତୁ ସଂସାର କଥାଟି କହିଲାବେଳେ ଜୀବନର ଏଇ ଭଲମନ୍ଦ ଦିଗଟିହିଁ ଅଧିକ ପ୍ରାକୃତ ଭଳି ମନେହୁଏ ।

ଧାନକ୍ଷେତରେ ଧାନ କେଣ୍ଡାଟିଏ ପରି ଜୀବନ ସର୍ବଦା ଦୋଳାୟମାନ । କେଉଁ ମୁହୂର୍ତ୍ତରେ ସୁଖ ବୋଲି ବିଶ୍ୱାସ କରାଯାଉଥିବା ସରଳ ରେଖାଟି ବକ୍ର ହେବାକୁ ଆରମ୍ଭ କରିବ କିଏ କହିବ ସେ କଥା !

କାହାର ଜୀବନ ସରଳ ରେଖାଟିଏ ଯେ ! ରଜାଙ୍କର ନା ରଙ୍କର ? ମନ୍ତ୍ରୀଙ୍କର ନା' ମେହେନ୍ତରର ? ଜୀବନ ଏକ ଘୂର୍ଣ୍ଣାୟମାନ ଚକ୍ର । ଏ ଚକ୍ରର ଗତି ସହ ବିରୋଧୀହୀନ ସଞ୍ଚାଳନହିଁ ସଫଳ ଜୀବନ । ଅତଏବ କୌଣସି ଦୁର୍ଦ୍ଦିନରେ ବା ସୁଦିନରେ ଆତ୍ମସମୀକ୍ଷାଜନିତ ପରିହାସଟିଏ, ଜୀବନକୁ କେତେ ସରଳ କରିଦିଏ ସତେ ?

ନିଜ ମୁହଁ ଦେଖିବାକୁ ଘୋଡ଼ାମୁହଁ ଭଳି, ବା ନିଜ ଦେହରେ ମାରମୂକ ଘା' ଟିଏ ହୋଇଛି ବୋଲି ପରିହାସ କରି ପାରୁଥିବା ଲୋକଟି ସବୁଠାରୁ ସହଜରେ ବଞ୍ଚନ୍ତି ନାହିଁକି ?

ଏଥିପାଇଁ ବୋଧେ କ୍ଷମତା ଏବଂ ଐଶ୍ୱର୍ଯ୍ୟରେ ପାହାଡ଼ ପାଲଟି ଯାଇଥିବା ସମ୍ରାଟଟିଏ ମଧ୍ୟ ଲୋଡ଼ୁଥିଲେ ଗୋଟିଏ ବିଦୂଷକ । କିଙ୍ଗ୍ ଲିଅର୍ ଖୋଜୁଥିଲେ ଗୋଟିଏ କ୍ଲାଉନ୍ । ଯେତେ ସମୃଦ୍ଧି ଥାଉ ପଛେ, ଯେତେ ଦୁଃଖ ଥାଉ ପଛେ, ଜୀବନ ପୋତର ସୁଗମ ଗତି ପାଇଁ ପରିହାସଟିଏ ଲୋଡ଼ା । ବଞ୍ଚିବାର ଭାରକୁ ହାଲ୍‌କା କରିଦେବା ପାଇଁ ନିରୋଳା ବ୍ୟଙ୍ଗଟିଏ ଆବଶ୍ୟକ ।

ରାଜାଙ୍କୁ କିଏ ଆଉ ଥଟ୍ଟା କରନ୍ତା ! ଶାସନକୁ କିଏ ଆଉ ଟାପରା କରନ୍ତା ! ବିଦୂଷକ ବା ସମ୍ବାଦପତ୍ରଟିଏ ଛଡ଼ା !

ଭରା ସଭାରେ ରାଜା ବିଦୂଷକଙ୍କୁ କହୁଛନ୍ତି—ହେ ମହାପାତ୍ରେ ! ମୁଁ ସ୍ୱପ୍ନରେ ଦେଖିଲି, ତୁମେ ଗୋଟାଏ କୁକୁର ପାଲଟି ଯାଇଛ । ବିଦୂଷକ ଉତ୍ତର କରୁଛନ୍ତି— ସତ ମଣିମା । ମୁଁ ବି ସେଇ କଥା ଦେଖିଲି । ଦୋଉ ଶ୍ମଶାନରେ ଗୋଟିଏ ତୁଳସୀଗଛ ପାଲଟିଛନ୍ତି, ମାତ୍ର ମୁଁ ମୋର କୁକୁର ସ୍ୱଭାବ ଯୋଗୁଁ ଛାମୁଁଙ୍କ ଉପରେ ପରିସ୍ରା କରୁଛି । ରାଜା ହସୁଛନ୍ତି । ପ୍ରଜା ହସୁଛନ୍ତି । ରାଜା ସାଧାରଣ ମଣିଷ ପାଲଟୁଛନ୍ତି । ଜୀବନ ଯେମିତି ପରିହାସଟି ମାତ୍ର !

ଆଧୁନିକ ସମୟରେ ସମ୍ବାଦପତ୍ରର ଭୂମିକା କେତେକାଂଶରେ ସେଇ ଭଳି । ବ୍ୟସ୍ତବହୁଳ ମଣିଷ ଜୀବନରେ ପରସ୍ପର ଆଳାପ ନେଇ ସମୟ ଖର୍ଚ୍ଚ କରିବା ଯେତେବେଳେ ଦୁର୍ମୂଲ୍ୟ, ସେତେବେଳେ କାହାର କାହାର ଜୀବନ ପ୍ରଣାଳୀକୁ ନେଇ ସାମାନ୍ୟ ଟିକେ ପରିହାସ, ଆଣିଦିଏ ଏକ ଭିନ୍ନ ପରିବେଶ ।

ପୁଣି ମନେ ରଖିବା ଉଚିତ୍ ଯେ ପ୍ରତ୍ୟେକ ମଣିଷ ସମାନ । ସବୁରି ପିଣ୍ଡରେ ସେଇ ଐଶ୍ୱରିକ ସତ୍ତା । କେବଳ ସୁଯୋଗର ଭିନ୍ନ ଭିତ୍ତିରେ ମଣିଷ ହୋଇଯାଏ ଭିନ୍ନ ଭିନ୍ନ । କିଏ ଶାସକତ କିଏ ଶାସିତ । କେହି ମହୋଦୟତ କେହି ଇତର । କିନ୍ତୁ ମୌଳିକ ସନ୍ତୁଳନରେ କିଏ ମହତ୍ କିଏ ନଗଣ୍ୟ ସେକଥା କିଏ ବିଗ୍ଭର କରିବ ? ଅତଏବ ଏଇ ପରିହାସର ପରିସର ଭିତରେ ମଣିଷ ମଣିଷ ମଧ୍ୟରେ ଥିବା କ୍ଷୀନ ପାର୍ଥକ୍ୟଟିକୁ ଅନ୍ତର କରି ଦିଆଯିବାର ଉଦ୍ଦେଶ୍ୟ ନିଶ୍ଚିତରେ ସାଧୁ ।

ଅନ୍ତତଃ ଥଟ୍ଟା ତାମସା ବେଳେ, ରାଜା ବିଗ୍ଭରୁଛନ୍ତି, ମହାପାତ୍ରେ ମୋର ଜଣେ ବନ୍ଧୁ ।

ଆଜି ହୁଏତ ରାଜାମାନେ ନାହାନ୍ତି । ମାତ୍ର ଶାସକତ ଅଛନ୍ତି ! ଗଣ-ତନ୍ତ୍ରରେ ବଡ଼ କଥା ହେଉଛି ଯେ, ଶାସକଟି ମଧ୍ୟ ସାଧାରଣ ମଣିଷ । ରାଜତନ୍ତ୍ରର ଧାରଣ ପରି ସେ ମର୍ତ୍ତରେ ଚଳନ୍ତି ବିଷ୍ଣୁ ନୁହନ୍ତି । ଆମରି ଭିତରୁ ଜଣେ ଶାସକ । ଅତଏବ ଶାସକଙ୍କୁ ପରିହାସର ପର୍ଦ୍ଦା ଉପରକୁ

ଟାଣି ଆଣିଲାବେଳେ ଯେଉଁ ସାଧାରଣ ଭାବଟି ଅନୁଭୂତ ହୁଏ, ତାହା ସ୍ୱାଧୀନ ଜୀବନ । ଶାସନକୁ ଭୟ କରୁଥିବା ସମାଜରେ ଜୀବନ କେତେ ଅନ୍ଧାର, ସେ କଥା କେବଳ ଅନୁଭବୀ ଜାଣେ ।

ସମସାମୟିକ କାଳରେ ସବୁଠାରୁ ବେଶୀ ସ୍ୱାଧୀନ ଶାସିତ ଜୀବନ ସମ୍ଭବ କେବଳ ଗଣତନ୍ତ୍ର ଶାସନରେ । ଜୀବନ ଯେତେ ସ୍ୱାଧୀନ, ପରିହାସର ସମ୍ଭାବନା ସେତେ ନିର୍ମଳ ।

ଗଣତାନ୍ତ୍ରିକ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଶ୍ରୀମତୀ ମାର୍ଗାରେଟ୍ ଥାଚର । ସ୍ୱାମୀ ତାଙ୍କର ଡେନିସ୍ ଥାଚର୍ । ଶ୍ରୀମତୀ ଥାଚର୍ ପ୍ରଧାନମନ୍ତ୍ରୀ ହେବାର ଅଠର ମାସ ପରେ "ପ୍ରାଇଭେଟ୍ ଆଇ" ପତ୍ରିକାରେ "ଡିଅର ବିଲ୍" ଶୀର୍ଷକ ଗୁଡ଼ିଏ ପରିହାସପୂର୍ଣ୍ଣ ଚିଠି ପ୍ରକାଶିତ ହେବାକୁ ଲାଗିଲା । ସେଗୁଡ଼ିକ ଥିଲା ଶ୍ରୀ ଥାଚର୍‌ଙ୍କର ଶ୍ରୀମତୀ ଥାଚର୍‌ଙ୍କ ସମ୍ପର୍କରେ ତାଙ୍କର ଜଣେ ବନ୍ଧୁଙ୍କ ନିକଟକୁ ପତ୍ର । ସେସବୁ ଚିଠି ପଢ଼ି ବ୍ରିଟିଶ୍ ଜନସାଧାରଣ ହସି ହସି ବେଦମ ହେଲା ।

ବ୍ରିଟିଶ୍ ଗଣତନ୍ତ୍ରର ସର୍ବୋଚ୍ଚ ଶାସନକର୍ତ୍ତ୍ରୀ ଶ୍ରୀମତୀ ଥାଚର୍ । ମାତ୍ର ସ୍ୱାମୀ ଡେନିସ ଏକ ସାଧାରଣ ଶାସିତ । ଅତଏବ ଏତେବଡ଼ ସ୍ତ୍ରୀର ସ୍ୱାମୀ ହେବାରେ ସଂଘଟିତ ସୁବିଧା ଅସୁବିଧା ସବୁ ପରିହାସ ଛଳରେ ବ୍ୟକ୍ତ କରାଯାଇଥିଲା ଚିଠି ଗୁଡ଼ିକରେ । ଗୋଟିଏ ଚିଠିରେ ଡେନିସ ଲେଖିଥିଲେ– ପ୍ରିୟ ବନ୍ଧୁ ! ଆମ ଶୋଇବା ଘରର ଚାରିପଟେ ମତେ ସବୁବେଳେ ଫୋନ ଘଣ୍ଟିର ଆବାଜ୍ ଶୁଭୁଛି । ନିଦ ହେଉଛି କେତେବେଳେ ! କିନ୍ତୁ ଯାହା କୁହ, ମାର୍ଗାରେଟ୍‌ଙ୍କ ଦେହଟି ମତେ ସିଂହାସନ ପରି ମନେ ହେଉଛି ।

କହିବା ବାହୁଲ୍ୟ, ପୁସ୍ତକ ଆକାରରେ ପ୍ରକାଶିତ ହୋଇ, ଜନସାଧାରଣଙ୍କ ଦ୍ୱାରା ଲକ୍ଷ ଲକ୍ଷ ସଂଖ୍ୟାରେ ଆଦୃତ ହୋଇଥିଲା, ଏ ପରିହାସ ପୁସ୍ତକଟି ।

ଯେଉଁ ଜାତି ନିଜକୁ ନେଇ ହସିପାରେ ନାହିଁ, ହସି ହସି ଶାସକ ସହିତ ଆଳାପ କରି ପାରେ ନାହିଁ, ପରିହାସର ପର୍ଦ୍ଦାରେ ଜୀବନକୁ ପ୍ରତିଫଳିତ କରାଇ ପାରେ ନାହିଁ, ସତରେ କେତେ ସଙ୍କୁଚିତ ସେ ଜାତି, କେତେ ଡରକୁଳା ! କେତେ ମ୍ରିୟମାନ ସେ ମଣିଷ ଜୀବନ !

ଜୀବନ ଦୁଃଖପୂର୍ଣ୍ଣ । ମାତ୍ର ନିର୍ବାଣ ଅପେକ୍ଷା ପରିହାସର ନିଶ୍ୱାସ-କୋମଳ ଦୁଇଟି ଡେଣାରେ ଟିକେ ହାଲକା କରିଦେଲେ ଜୀବନ ସତରେ କ'ଣ ସବୁବେଳେ ଦୁଃଖପୂର୍ଣ୍ଣ ଲାଗେ ?

୨୩ । ୧ । ୮୫

## ଓଡ଼ିଆ-୧

ଏମାନଙ୍କ ମନରେ ସ୍ୱାଭିମାନ ନାହିଁ, ମୋହ ନାହିଁ, ଉଦ୍ଦାମ ଉଦ୍ଦୀପନା ନାହିଁ । ଅଛି କେବଳ ସାଧାରଣ ସ୍ଥିତିର ଥାଡି । ବଞ୍ଚିବାର ବିକଳ ପ୍ରତିଶ୍ରୁତି । ନର୍ଦ୍ଦମା କଡ଼ରେ ବିଳ ମଧ୍ୟରେ ଜୀବନ କାଟୁଥିବା ଚୁଚୁନ୍ଦ୍ରା ପରି ଏମାନଙ୍କର ପ୍ରତିବାଦ ନାହିଁ । ପ୍ରବହମାନ ମେଣ୍ଟ ନାହିଁ, ମାଡ଼ିଯିବାର ମୁଗ୍ଧ ଆବେଶ ନାହିଁ । ଓଡ଼ିଆ ଭାଷା କହି ଓଡ଼ିଆ ମାଟିରେ ପାଦ ପିଟୁଥିବା ଏ ମଣିଷଗୁଡ଼ିକ ଯେପରି ନିଶ୍ଚେତନ ପ୍ରକ୍ରିୟାରେ ଅବରୁଦ୍ଧ ! ଉଠ କଙ୍କାଳ, ଉଠ କଙ୍କାଳ କହି ଏମାନଙ୍କୁ ଯେତେ ଉଦ୍‌ବୁଦ୍ଧ କଲେ ମଧ୍ୟ, ଉଠିବା ପାଇଁ ଏ ଲୋକଙ୍କର ଯୁ' ନାହିଁ ଯେମିତି ।

ଏ ଜାତି ନିଜ ଦେହରେ ଘା'ଟିଏ ଅଛି କହି ଆଙ୍ଗୁଠି ଦେଖେଇ ଉପହାସ କରେ । ଅନ୍ୟକୁ କହେ, ତୁ 'ହସ' ଏ ଘା' ଦେଖୁ । ମାତ୍ର କିଭଳି ଉପାୟରେ ଏ ଘା'ଟି ଭଲ ହେବ ସେ ଚିନ୍ତା ଏ ମାଟିର ରକ୍ତରେ ନାହିଁ । ନିଜକୁ ପରସ୍ପର ପାଦ ଭିଡ଼ୁଥିବା କଙ୍କଡ଼ା ବୋଲି ଆଖ୍ୟାନ କରି, ଗପଟିଏ ଅନ୍ୟ ଆଗରେ କହି ଏ ବୁଗ୍‌ଣ ମଣିଷ ଗୁଡ଼ିକ ନିଜ ମୁହଁରେ ନିଜେ ଛେପ ପକାନ୍ତି ଏବଂ ହସନ୍ତି ମଧ୍ୟ ।

ଭାରତର କୌଣସି କୌଣସି ସ୍ଥାନରେ ଏବଂ ଭାରତ ବାହାରେ ଓଡ଼ିଶାର ଅବସ୍ଥିତି ସମ୍ପର୍କରେ ସଚେତନ ଲୋକଙ୍କର ସଂଖ୍ୟା ଆଶ୍ଚର୍ଯ୍ୟଜନକ ଭାବେ ନଗଣ୍ୟ । ବିବିଧ ଭାରତୀ କାର୍ଯ୍ୟକ୍ରମର ବେଳେ ବେଳେ ଭୁବନେଶ୍ୱର ଓଡ଼ିଶାରୁ ବା ଗଭରକେଲା ଓଡ଼ିଶାରୁ ଅମୁକ ଅମୁକ ଅନୁରୋଧ କରିଛନ୍ତି ବୋଲି ଶୁଣିବାକୁ ମିଳେ । ମାତ୍ର ଗଜନନ୍ଦଗାଉଁ, କଟିହାର ଭଳି ଛୋଟ

ଛୋଟ ଜାଗାମାନଙ୍କରୁ କେହି ଅନୁରୋଧ କରିଥିଲେ ସମ୍ପୃକ୍ତ ରାଜ୍ୟମାନଙ୍କର ନାମ କହିବା, ଅନାବଶ୍ୟକ । ଏହାର କାରଣ ଓଡ଼ିଶା ବା ଏହାର କୌଣସି ସହର ବାହାରେ ମୋଟେ ଜଣାଶୁଣା ନୁହଁନ୍ତି ।

ଏଥିପାଇଁ ସର୍ବାଗ୍ରେ ଦାୟୀ ଆମେ ଓଡ଼ିଆମାନେ, ସାମ୍ପ୍ରତିକ କାଳରେ କୌଣସି କାର୍ଯ୍ୟ ବା ଚେତନା ମାଧ୍ୟମରେ ଉତ୍କର୍ଷ ଦେଖାଇଥିବା ଓଡ଼ିଆ ଜଣେ ହେଲେ ସୁଦ୍ଧା କେହିନାହିଁ । ନିଜ ଭିତରେ ଉଚ୍ଚମାନର ଅଭାବବୋଧ ଯୋଗୁଁ ଆମର ସ୍ୱାଭିମାନ ଆହତ ହୁଏ ନାହିଁ । ଓଡ଼ିଆ ଭାବେ ଏଇ ସାଧାରଣ ବଞ୍ଚ୍ରହିବା ସ୍ଥିତିଟି ହିଁ ବୋଧେ ତା'ର ଅବଶ୍ୟମ୍ଭାବୀ ପରିଚୟ । ସେଇ କାରଣରୁ ଓଡ଼ିଆଭାଇ ଦୁର୍ଗମ ଲଙ୍ଘିବା ପାଇଁ କୌଣସି ଇଚ୍ଛା କରେ ନାହିଁ କି ମେଘାସନ ଉପରେ ଠିଆହୋଇ ସ୍ପଷ୍ଟ ପ୍ରାଚୁର୍ଯ୍ୟ ପ୍ରତି ଉତ୍କଣ୍ଠିତ ହୁଏ ନାହିଁ କେବେ ।

ନିକଟ ବିଗତ କାଳରେ ଆବିର୍ଭୂତ ହୋଇଥିବା ମଧୁସୂଦନ ଦାସଙ୍କ ଛଡ଼ା ବୋଧହୁଏ ଅନ୍ୟକେହି ଓଡ଼ିଆ ଏ ପର୍ଯ୍ୟନ୍ତ ଜନ୍ମହୋଇ ନାହିଁ ଯେ କି ନିଜର ସ୍ୱାଭିମାନ ସମ୍ପର୍କରେ ଚିନ୍ତା କରିଛି । ନେତୃତ୍ୱଠାରୁ ଆରମ୍ଭକରି ଖେଳ-କୁଦର ସାଧାରଣ ଜୀବନ ଦ୍ୟୋତନା ପର୍ଯ୍ୟନ୍ତ ସବୁସ୍ତରରେ ଓଡ଼ିଆମାନଙ୍କର ସୁପ୍ତାବସ୍ଥା । କେବେ ଏ ସୁପ୍ତାବସ୍ଥାର ଅବସାନ ହେବ କଳ୍ପନା କରିବା କଷ୍ଟକର ।

ଆପଣା ଘରକୁ ନେଇ ନିଜ ମନରେ ସ୍ୱାଭିମାନ ନଥିଲେ ତାର ଚଉହଦି ଭିତରେ ସଫଳ ଭାବରେ ବଞ୍ଚ୍ହୁଏନା । ଜୀବନ ଅସାର ମନେହୁଏ । ନିଜର ବାସସ୍ଥାନଟି ନିଜକୁ ସାରାଜୀବନ ପାଇଁ ଅବାନ୍ତର ଓ ଅକୁଳାନ ଜଣାପଡ଼େ । ଫଳତଃ ମଣିଷଟି ଚିନ୍ତାରେ ଓ ଚେତନାରେ ଖର୍ବ ହୋଇପଡ଼େ ।

ସେଇଭଳି ଏକ ଖର୍ବଜାତି ଆମେ ଓଡ଼ିଶାବାସୀ । ନିଜର ଉଚ୍ଚତାଠାରୁ ଆରମ୍ଭକରି ଆମର ପର୍ବତ ପର୍ଯ୍ୟନ୍ତ ବାଙ୍ଗର ବୋଲି ଅର୍ଥସମ୍ପନ୍ନରେ ଆମେ ଗ୍ରହଣ କରିନେଇଚେ ।

ପଖାଳକୁ ଆମେ ଉପହାସ କରୁ, ଅଥଚ ପଖାଳ ଖାଉ, ଓଡ଼ିଆ ଭାଷାକୁ ଏକ ନିକୃଷ୍ଟ ଭାଷା କହି ଜୀବନରେ କେବେ ଓଡ଼ିଆ ବହିଟିଏ ନ କିଣିବାର ନୀରବ ପ୍ରତିଶ୍ରୁତିଟିଏ ରଖୁ, ଅଥଚ ବକ୍ତୃତା କଲାବେଳେ ଗୁରୁଗମ୍ଭୀର ଭାବ ଦେଖାଇ କହୁ—"ମାତୃଭୂମି ମାତୃଭାଷାର ମମତା ଯା' ହୃଦେ ଜନମି ନାହିଁ... ।" ଓଡ଼ିଶାକୁ ଏକ ଭବିଷ୍ୟତହୀନ ରାଜ୍ୟ ଭାବରେ ଅଭିହିତ କରି ନିଜର ବିଜ୍ଞର ପାରଦର୍ଶିତାକୁ ପ୍ରତିପାଦନ କରୁ । ଅଥଚ ଓଡ଼ିଶା ଛାଡ଼ି ଅନ୍ୟ କୁଆଡ଼େ ଚାଲିଯିବାର ଯୋଜନା ଆମର ନଥାଏ ଏବଂ ସର୍ବୋପରି ସାରା-

ଭାରତରେ ଓଡ଼ିଶାରେ ହିଁ ସର୍ବାଧିକ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ବୋଲି ଏକ ଟଟକା ସମ୍ବାଦ ପରିବେଷଣ କରି ଆପେ ଆପଣାର ଶାସକତନ୍ତ୍ରକୁ ନଗଦ ସାଧାରଣ ଜ୍ଞାନରେ ପୋଖତ ପ୍ରମାଣ କଲୁ । ଅଥଚ ଏ କଥାଟି କହିଲାବେଳେ ଆମକୁ ଲଜ୍ଜା ଲାଗେନା ଯେ ଆମେ ଶିକ୍ଷିତ ଶାସକ ମାନେ ହିଁ ଏଥିପାଇଁ ଦାୟୀ !

ଓଡ଼ିଆ କ'ଣ ପ୍ରକୃତରେ ଅପାରଗ ?

ଏଭଳି କୌଣସି ମାର୍ଗ ବା ପଥ ନାହିଁ ଯେଉଁଥିରେ ଓଡ଼ିଆଟିଏ ଗମି ନ ପାରିବ । ଓଡ଼ିଆଙ୍କର ଇତିହାସରେ ପ୍ରେରଣା ମଧ୍ୟ କିଛି କମ୍ ନାହିଁ । ମାଟିରେ, ପଥରରେ, ପର୍ବତରେ, ଗୁମ୍ଫାରେ କିଛି କମ୍ ପ୍ରଗେଦନା ନାହିଁ, ଓଡ଼ିଆଙ୍କୁ ଉଜ୍ଜୀବିତ କରିବାପାଇଁ ଅନ୍ୟ ଇଲାକାର ଲୋକଟିଏ ଏଠାକୁ ଆସି ତଟସ୍ଥ ହୁଏ । ନୃତ୍ୟ, କଳା, ଶିଳ୍ପ, ଐଶ୍ୱର୍ଯ୍ୟ, ବଳ, ବୀର୍ଯ୍ୟ, ସୌନ୍ଦର୍ଯ୍ୟ– ଏସବୁର ନମୁନା ନେଇ ଓଡ଼ିଆ ପୁଅ ଖୋଲିଦିଏ ଓଡ଼ିଶାର ଅତୀତ ଗମ୍ଭୀର । ଖର୍ବକାୟ ପୁରୁଷଟି କୁବୁଜ ପିଠିରେ ବୋହିଆଣି ଦେଖେଇଦିଏ–ଏଇ ଦେଖନ୍ତୁ ଆମ ଗୋସେଇଁ ସାଆନ୍ତମାନଙ୍କର ଛବି, ଦେଖନ୍ତୁ କେଡ଼େ କେଡ଼େ ନିଶ ତାଙ୍କର, କିପରି ସ୍ଫୀତ ଦିଶୁଛି ତାଙ୍କର ଆଜାନୁ ଲମ୍ବିତ ବାହୁ, ଅମୁକ ଅମୁକ କାମରେ ସେ ସମୁକ ସମୁଜ ନମୁନା ରଖିଦେଇ ଯାଇଛନ୍ତି । ଜାଣନ୍ତି ଆଜ୍ଞା ସେ କେଉଁ ଶତାବ୍ଦୀରେ ବଞ୍ଚିଥିଲେ ?

ଓଡ଼ିଶାର ପରମ୍ପରା ଅତି ସମୃଦ୍ଧ । ଓଡ଼ିଶାର ଅତୀତ ଏକ ସୁନାର ଅତୀତ, ମାତ୍ର ସେଇଠି ସବୁ ଶେଷ ।

ଓଡ଼ିଆମାନଙ୍କର ବର୍ତ୍ତମାନ ଏକ ବିକୃତ ବର୍ତ୍ତମାନ । ବିଶାଳ ବଟ-ବୃକ୍ଷର ପତନ ପରେ, ଉକ୍ତ ସ୍ଥାନରେ କାହିଁ କେଉଁ କୋଣକୁ ଆଶ୍ରୟକରି ଅବାନ୍ତର କଣ୍ଟା ମାରିଚ ଗଛଟିଏ ଉଠିବାପରି ବିତର୍କିତ ଦିଗରେ ଅବସାନ ପରେ ଏ ହୀନପ୍ରଭ ଖର୍ବ ଓଡ଼ିଆମାନେ ।

ଥରେ ଗୋଟିଏ ସଭାରେ ବ୍ୟଙ୍ଗୋକ୍ତିର ଉତ୍କର୍ଷତା ଉପରେ ବିଚାରକରି ପୁରସ୍କାର ଘୋଷଣା ହେବାର ଥାଏ । ସେ କାର୍ଯ୍ୟକ୍ରମରେ ବିଭିନ୍ନ ରାଜ୍ୟର ଲୋକେ ଆସି ଭାଗନେଉଥାନ୍ତି ଏବଂ ନିଜ ନିଜର ହାସ୍ୟୋଦ୍ଦୀପକ ବ୍ୟଙ୍ଗ କଥାମାନ କହି ଉପସ୍ଥିତ ଜନତାଙ୍କ ଭିତରେ ହାସ୍ୟରୋଳ ସୃଷ୍ଟି କରିବାକୁ ଚେଷ୍ଟା କରୁଥାନ୍ତି । ମାତ୍ର ଆଶ୍ଚର୍ଯ୍ୟର କଥା କୌଣସି ବ୍ୟଙ୍ଗ କଥାରେ ସମବେତ ଜନତା ହାସ୍ୟ ଅନୁଭବ କରୁନଥିଲେ । ଶେଷକୁ ଆସିଲେ ଗୋଟିଏ ରାଜ୍ୟର ଜଣେ ଲୋକ । ସେ ଠିଆହୋଇ କହିଲେ,– "ଆଜ୍ଞା, ମୁଁ ଅମୁକ ରାଜ୍ୟର ଲୋକ ଏବଂ ମୁଁ ମୋର କଥାଟିକୁ ସଂସ୍କୃତରେ କହିବି ।" ତା' ପରେ ଉଠିଲା ହସ । ହସି ହସି ଲୋକେ ବେଦମ୍ ହୋଇଗଲେ ସେ ସଭାରେ ।

କହିବା ବାହୁଲ୍ୟ ସେ ବ୍ୟକ୍ତିଟି ଥିଲେ ଏପରି ଏକ ରାଜ୍ୟର ଲୋକ ଯେଉଁଠାରେ ଲୋକେ ସଦାକାଳେ ମୂର୍ଖ ଭାବରେ ପ୍ରମାଣିତ ଏବଂ ସେମାନେ ଯେ ସମ୍ମତ ଜାଣନ୍ତି ଏକଥା ଚିନ୍ତା କରିବା ହିଁ ଥିଲା ଏକ ଶ୍ରେଷ୍ଠ ବ୍ୟଙ୍ଗ ।

ଉପରୋକ୍ତ ଘଟଣାଟି ଭଳି ଆମର ଅବସ୍ଥା "ମୁଁ ଓଡ଼ିଆ, ମୁଁ ଉକ୍ତ କାର୍ଯ୍ୟକୁ ସକ୍ଷମ" ବୋଲି କହିଲେ ଆନଜନମାନେ ଉହାଡ଼ ଆଖିରେ ଚାହିଁବାକୁ ପଛାଉ ନାହାନ୍ତି । ଯେଉଁ ଓଡ଼ିଆ ଏଭଳି ଚାହାଣୀ ଦେଖି ଲାଜିଯାଉ ନାହିଁ ସ୍ୱାଭିମାନରେ ସରିଯାଉ ନାହିଁ ତା'ର ଭବିଷ୍ୟତ ଆଉ ଅଛି—ଏ କଥା କ'ଣ ଆଶା କରିହେବ ?

୩୦ । ୧ । ୮୫

## ଭାଙ୍ଗି ପଡ଼ୁଅଛି ମାଟିଘର–(୧)

ସେହି ଗୋଟିକ ଥିଲା ଆମ ଗାଁର ସବାଶେଷ ମାଟିଘର । ତା' ପୂର୍ବରୁ ଅନ୍ୟ ସମସ୍ତେ ପ୍ରାୟ ଇଟା, ପଥର ଓ ସିମେଣ୍ଟରେ ନିଜ ନିଜ ଘର ସବୁ ତୋଳେଇ ସାରିଥିଲେ । ପାଖରେ ଆଲୁମିନିୟମ କାରଖାନା ଖୋଲିବା ପରଠାରୁ ଗାଁର ଆଉ ଯାହାକିଛି ଲାଭକ୍ଷତି ହେଉ ପଛକେ, ସମସ୍ତଙ୍କର ଘରର ଚେହେରା ବଦଳି ଆସୁଥିଲା ଧୀରେ ଧୀରେ । ହାତରେ ଦୁଇ ପଇସା ପଡ଼ୁଥିଲା ଲୋକଙ୍କର । ଗାଁର ପ୍ରଧାନ ରାସ୍ତାଟି, ଗ୍ରାମ୍ୟ କିଶୋରୀଟିଏ କିଞ୍ଚିତ ଅଧିକ ମୁହଁମଖା ପାଉଡରରେ ମୁହଁକୁ ରଙ୍ଗେଇଲା ଭଳି, କିଛି କିଛି ପିଚୁ ଢଳାଯିବା ପରେ ଦେଖାଯାଉଥିଲା–ସହରୀ ସହରୀ ।

ଘର କାନ୍ଥରେ ଆଉ ମାଟି ନଥିଲା । ଘର ଅଗଣାମାନଙ୍କରୁ ମଧ୍ୟ ମାଟି ହଟିଯିବାକୁ ଆରମ୍ଭ କରିଥିଲା । ଚୁଲି ପଖାମାନଙ୍କରେ ଏଣିକି ଖୁବ୍ କମ୍ ମାଟି ହାଣ୍ଡି ଦେଖାଯାଉଥିଲେ ମଧ୍ୟ ଘରେ ଘରେ ଆଲୁମିନିୟମ ଡେକ୍‌ଚିରେ ରୋଷେଇ । ଗାଁ ରାସ୍ତାରେ ପିଚୁ । ଚଉରମାନେ ମଧ୍ୟ ସିମେଣ୍ଟରେ ତିଆରି ହେବାକୁ ଆରମ୍ଭ କରିଥିଲେ । ଘର ଛାତମାନଙ୍କରେ ଟିଣ, ଆଜ୍‌ବେଷ୍ଟସ୍, ଟାଇଲ କିମ୍ବା କଂକ୍ରିଟ୍ ସାରା ଗାଁରୁ ମାଟିସହ ମମତା କମି ଆସୁଥିଲା ବୋଧେ !

ମାଟି ଯେମିତି ଅସନା, ମାଟି ଯେମିତି ମଫସଲୀ, ମାଟି ଯେମିତି କ୍ଷଣିକ । ମାଟି ଉପରେ ନିର୍ଭର କରିବାକୁ ମଣିଷ ଆଉ ପସନ୍ଦ କରୁନାହିଁ

ହୁଏତ ! ଏପରିକି ପୁରୁଷାନୁକ୍ରମେ ମାଟିର କଣ୍ଢେଇ, ଘଡ଼ି, କାଞ୍ଜୁଲି ଆଦି ତିଆରି କରି ଆସୁଥିବା ନାମଜାଦା ମୁଦୁଲୀ ଘର ଲୋକେ ଆଉ ମାଟିରେ କିଛି ଗଢ଼ୁ ନାହାନ୍ତି ଏବେ ।

ଘନ ମୁଦୁଲୀର ପିଲମାନେ ମାଟି କଣ୍ଢେଇ କାମ ଛାଡ଼ିଦେଇ, ବର୍ତ୍ତମାନ ଆନ ବୃତ୍ତିରେ ଲାଗିଛନ୍ତି ।

ମାଟିରେ କାରବାର ଆଜିକାଲି କ'ଣ ପୋଷାଏ ? ମାଟିଘର ଦାରିଦ୍ର୍ୟର ନମୁନା । ଆଜିକାଲି କିଏ କାହିଁକି ଦରିଦ୍ର ରହନ୍ତା ଯେ ଏ ଜନମଙ୍ଗଳକାରୀ ରାଷ୍ଟ୍ରରେ ?

ଅତଏବ ଆମ ଗାଁର ଏକମାତ୍ର ମାଟିଘରର ମାଲିକ, ସାଧୁ ଗଉଡ଼, ହାତରେ ଦୁଇପଇସା ହେବାରେ ମାଠିଘର ସହିତ, ସେ ତା'ର ସମ୍ପର୍କ ଛିଣ୍ଡେଇଦେଲା । ତା' ସାନପୁଅ ବ୍ୟାଙ୍କରେ ପିଅନ । ତେଣୁ ସେ ମାଟିଘର ଭାଙ୍ଗି ଏବେ କୋଠାଘର କରୁଛି ।

ସାଧୁ ଗଉଡ଼ର ମାଟିଘର କାନ୍ଥରେ ଶାବଳ ଡିଅର ପ୍ରତିଟି ଆଘାତ ସହିତ ଶେଷ ହୋଇ ଆସୁଥିଲା ଆମର ମାଟି ସହିତ ଗୋଟିଏ ସ୍ତରର ସଂପର୍କ । ଶିଳ୍ପ ସ୍ଥାପତ୍ୟ ଠାରୁ ଆରମ୍ଭ କରି ଜୀବନର ଅନେକ ସ୍ତରରେ ବହୁକାଳ ଧରି ଜଡ଼ିତଥିବା ଏଇ ସର୍ବ ପ୍ରାଚୀନ ପ୍ରାକୃତିକ ସମ୍ପଦ ସହିତ ଆମେ ଆଉ ଅଧିକ ବାନ୍ଧି ହେବାପାଇଁ ରାହୁଁନାହୁଁ ନିଶ୍ଚିତ ।

ଦିନେ ହୁଏତ ଉତ୍କଳର ପ୍ରଥମ ଶିଳ୍ପ, ମାଟିରେ ହୋଇଥିଲା ତିଆରି । ଗଡ଼ଜାତ ରାଜ୍ୟଗୁଡ଼ିକୁ ବାଦଦେଲେ ଆଧୁନିକ ଉତ୍କଳର ଅଧିକାଂଶ ରାଜ୍ୟ ସମୁଦ୍ର ଉପକୂଳରେ ଅବସ୍ଥିତ । ଏଠାରେ ସେପରି କୌଣସି ଉତ୍କୃଷ୍ଟ ଧରଣର ପଥର ଅଭାବରୁ ଅଧିବାସୀମାନେ କେବଳ ମାଟିରେ ଘରଦ୍ୱାର, ବାସନ ଓ ପ୍ରତିମା ପ୍ରଭୃତି ତିଆରି କରୁଥିଲେ । ସାରା ଉତ୍କଳରେ ପ୍ରାୟ ଥିଲା ସେଇ ପରମ୍ପରା । ପ୍ରାଚୀନକାଳରେ ଅନେକ ଗଡ଼, ଦୁର୍ଗ, ସାଧାରଣ ଘର, ମେରଦାଘର, ଧାନଘର ଓ ଆଟୁଘର ଆଦି କେବଳ ମାଟିରେହିଁ ହେଉଥିଲା ତିଆରି । ଅନେକ ପୁରାତନ ଦୁର୍ଗର ପାଚେରୀ କେବଳ ମାଟିରେ ତିଆରି ହୋଇଥିବାର ନମୁନା ଏବେ ମଧ୍ୟ ମିଳେ । ଏହି ପାଚେରୀ କାନ୍ଥର କଡ଼େ କଡ଼େ ଯେଉଁ, 'ମାଟି ବୁରୁଜ' ଥିଲା, ତା'ର କେତୋଟି ଉଦାହରଣ ପୁରୀ ଜିଲ୍ଲାର "ଶିଶୁପାଳଗଡ଼" ଓ "ପିପିଲି ଗଡ଼ରେ" ଦେଖାଯାଏ ।

ଅତି ପୁରାକାଳରୁ ଓଡ଼ିଶାବାସୀ ମାଟି ହାଣ୍ଡିର ବ୍ୟବହାର କରନ୍ତି । ପ୍ରତ୍ୟେକ ପର୍ବପର୍ବାଣୀ ଓ ଓଷାବ୍ରତରେ ନୂତନ ମାଟି ହାଣ୍ଡି ଦରକାର ହୁଏ । ବିବାହ ବ୍ରତରେ ଯେଉଁ ପୂର୍ଣ୍ଣକୁମ୍ଭ, ଦୀପାଳି ସରା, ଘଡ଼ି ଓ ରୁଖା ପ୍ରଭୃତି

ଦରକାର ହୁଏ, ସେସବୁ ମାଟିରେ ଚୁଲି, ହାଣ୍ଡି, ସରା, କୁମ୍ଭ, ଉହେଇ, ପଲମ, ମାଠିଆ, ସୁରେଇ ଓ ତେଲୁଣୀ ପ୍ରଭୃତି ପ୍ରାୟ ପ୍ରତ୍ୟେକ ପରିବାରର ବ୍ୟବହୃତ ସାମଗ୍ରୀ । ଗଞ୍ଜାମ ଅଞ୍ଚଳରେ ଛୋଟ ଛୋଟ ବାଳିକାମାନେ ପ୍ରତିବର୍ଷ ଭାଦ୍ରବ-ମାସରେ ଅମାବାସ୍ୟା ଦିନ ଯେଉଁ 'କୁଣ୍ଢା କଣ୍ଢେଇ ଖେଳ'' କରୁଥିଲେ, ତାହା ଓଡ଼ିଶାର ପ୍ରାଚୀନକାଳରେ ଜାତୀୟ ଓଷା ଥିବାର ପ୍ରମାଣ ମଧ୍ୟ ରହିଛି । କେବଳ ନୂଆମାଟି ପାତ୍ରରେ ଘରର ଝିଅମାନେ ଏହି ଓଷା ପାଳନ କରୁଥିଲେ ।

ଅତଏବ ଶିଳ୍ପ କ୍ଷେତ୍ରରୁ ଆରମ୍ଭକରି ଜୀବନ ନିର୍ବାହ ସହିତ ଅଧିକାଂଶ ସ୍ତରରେ ମଣିଷ ମାଟି ସହିତ ଥିଲା ଜଡ଼ିତ । କିନ୍ତୁ ସଭ୍ୟତା ଓ ପ୍ରଗତିର ସମତାଳ ସହ ସେଥିରେ ବର୍ତ୍ତମାନ ଦ୍ରୁତ ପରିବର୍ତ୍ତନ ପରିଲକ୍ଷିତ । ମାଟିରୁ ମମତାକୁ ଦୂରେଇ ଦେଇ, ଆବାସିକ ଦୃଷ୍ଟିରେ,କଂକ୍ରିଟ ସହିତ କୋଳା-କୋଳି ହେବାକୁ, ମଣିଷ ବାଧ୍ୟ ହେଉଛି ଏବେ । କଂକ୍ରିଟର ଆପାତସ୍ଥାୟୀ ଆଶ୍ୱାସନା ହୁଏତ ସଭ୍ୟ ମଣିଷ ପାଇଁ ଅଧିକ ଅଭୟଦାୟୀ ମନେ ହେଉଛି ସାମ୍ପ୍ରତିକ କାଳରେ । ମାଟିର ଘର, ମାଟିର ଅଗଣା, ମାଟିର ପ୍ରାଚୀର, ମାଟିର ପ୍ରତିମା ରୂପାନ୍ତରିତ ହେଉଛି କଂକ୍ରିଟ୍‌କୁ । ଯଦି ସମ୍ଭବ ହେଉ-ଥାଆନ୍ତା, ସମସ୍ତ ବିଲବାଡ଼ି ପ୍ରାନ୍ତରକୁ ମଣିଷ ଦୂରେଇ ଦିଅନ୍ତା ନାହିଁ ବୋଲି କିଏ ଅସ୍ୱୀକାର କରିବ । ସିମେଣ୍ଟ ସହର, ମାଟି, ମଫସଲ । ମାଟିରେ ଯେ ଘର ତିଆରି କରି ସେଥିରେ ବାସ କରଯାଇପାରେ, ଏ କଥାଟି ନିଶ୍ଚିତ ବିସ୍ମୟ ସୃଷ୍ଟି କରିବ ଆଉ କେତେବର୍ଷ ପରେ । ଯେମିତି ଅତୀତର ବାରବାଟୀ ଦୁର୍ଗରେ ନିର୍ମିତ ମୃତ୍ତିକାର ନବତଳ ପ୍ରାସାଦ ଏବେ ଆମ ଆଗରେ ଏକ ଅଲୌକିକ ତତ୍ତ୍ୱଭଳି ପ୍ରତୀତ ।

କରଞ୍ଜିଆଠାରୁ ଖିଚିଂ କିଚକେଶ୍ୱରୀଙ୍କ ନିକଟକୁ ଗଲାବେଳେ ଶୁକୁଳି ପାଖାପାଖି ଅଞ୍ଚଳରେ ଅନେକ ଗୁଡ଼ିଏ ସୁନ୍ଦର ସୁନ୍ଦର ମାଟିଘର ଆଖିରେ ପଡ଼େ । ଚିତ୍ରରେ ଅଙ୍କା, ନିର୍ମଳ ପରିବେଶର ଛୋଟ ଛୋଟ କଣ୍ଢେଇ ଘର ଭଳି ଖୁବ୍ ଆକର୍ଷଣୀୟ ସେ ଘରଗୁଡ଼ିକ । ମାଟି, ଗୋବର ମିଶ୍ରଣରେ ଲିପାପୋଛା, ସୁତରା ଘରଗୁଡ଼ିକ ମନେ ପକେଇଦିଏ ସେହି କର୍ମଠ ଲୋକଗୁଡ଼ିକର ହାତକୁ । ଠାଏ ଠାଏ ଚାଉଳ ପିଠଉ ଏବଂ ଗେରୁମାଟିର ଝୋଟି, ସିମେଣ୍ଟର ସ୍ଥାୟୀ ଆଶ୍ୱାସନା ସେଠାରେ ନାହିଁ. ମାତ୍ର କର୍ମଠ ହାତର ମାଟିଘର ଗୁଡ଼ିକ ସେଠି କୌଣସି ସିମେଣ୍ଟ ଘରଠାରୁ ଊଣା ନ ଥିଲା ନିଷ୍ଚିତ ।

ହେଲେ କେତେଦିନ ଏ ମାଟିଘରର ଆୟୁଷ ? ସିମେଣ୍ଟର ଅବଶ୍ୟମ୍ଭାବୀ ସୁଦୃଢ଼ ହାତ କେତେଦିନ ଆଉ ପ୍ରଶ୍ରୟଦେବ, ଏ ସରଳ ଗୋଷ୍ଠୀକୁ । ମାଟିଘର ଭାଙ୍ଗିଯାଉଚି ତ ଯାଉଚି, ତା' ସହିତ ଭାଙ୍ଗିଯାଉଚି ମାଟିଘରର ଝୋଟିକଳା ଧାନକେଣ୍ଡା, ପଦ୍ମଫୁଲ, ହାତୀମୁଣ୍ଡ, ଲକ୍ଷ୍ମୀପାଦ ଏବଂ ଚିପଚିହ୍ନର ପିରାମିଡ୍ ।

ମାଟିଘରମାନେ ହୁଏତ ଗଳିଯିବେ; କିନ୍ତୁ ଝୋଟିକଳାର ଭବଘନ ରୂପ ସିମେଣ୍ଟ କାନ୍ଥମାନଙ୍କରେ ଝୁଲିରହିବ ନିଷ୍ଚିତେ—ଗାଁଠାରୁ ସହର ପର୍ଯ୍ୟନ୍ତ ।

୬ । ୨ । ୮୫

# ଭାଙ୍ଗି ପଡ଼ୁଅଛୁ ମାଟି ଘର (୨)

ଛେର ଗୁଡ଼ାଏ ଦିନ ତଳର କଥା ।

କୃଷ୍ଣଚନ୍ଦ୍ର ମହାପାତ୍ରେ ଆପଣା ମଝିଆଁ ପୁଅ ଭଗୀରଥ ପାଇଁ ଝିଅ ଦେଖିଯାଉଥିଲେ ସପନିପୁର । ଝିଅଟି ମୁଣ୍ଡରେ ଓଢ଼ଣାଦେଇ ଆସି ଓଳଗି ହେଲା । ଓଢ଼ଣା ଫାଙ୍କରେ ମୁହଁଟିକୁ ନିକୁଟେଇ ଚାହିଁଲେ ମହାପାତ୍ରେ । ପାଦ ଦୁଇଟିକୁ ଚାହିଁଲେ କ୍ଷଣେ । "ନାଁଟି କ'ଣ କି ମା" ବୋଲି ପଗ୍ଭରି-ବସିଲେ । ଶେଷବେଳକୁ, ଘର ଗ୍ଭରିଆଡ଼େ ଆଖି ଦୁଇଟି ବୁଲେଇଦେଇ ପଗ୍ଭରିଲେ– "ମା' ତତେ ଚିତା ମୁରୁଜ ଦେଇଆସେ ତ ?"

ଝିଅଟିର ଲଜ ଲଜ ଅରକ୍ତ ମୁହଁରେ ଠିକ-ଚିହ୍ନ ଭଳି ଛୋଟିଆ ମୁଣ୍ଡ-ହଲା 'ହଁ'ଟିଏ । କନ୍ୟାପିତା ସେଠଉଁ କଥା ମୋଡ଼ିଲେ–ଆଜ୍ଞା ଆପଣେ ! ଆମ ସୁବନିର ଚିତାଝୋଟି ଦେଖିଲେ ମନ ପୂରିଯିବ ଆପଣଙ୍କର ।

କହିବା ବାହୁଲ୍ୟ ସେଦିନ ସୁବନିକୁ ଦୁଇଗ୍ଭରୋଟି ଝୋଟିଚିତା ଅଙ୍କନକରି ଦେଖେଇବାକୁ ପଡ଼ିଥିଲା ଘବି ଶ୍ୱଶୁରଙ୍କ ଆଗରେ । ନଗର ଜୀବନର ଅନୁପ୍ରବେଶ ଫଳରେ; ଝୋଟିଚିତା, ମୁରୁଜର ଆବଶ୍ୟକତା ଗାଁ ଗହଳିରୁ କମି ଆସୁଛି ଦିନୁଦିନ । ବଦଳି ଯାଉଟି ଏଭଳି ଚାରୁଶିଳ୍ପର ମୃଣ୍ମୟ ପୃଷ୍ଠପଟ । ମାଟି ସିମେଣ୍ଟ ହେଉଛି, ମାଟିଘର ଭାଙ୍ଗି ଛାତଘର ମଡ଼େଇ ହୋଇପଡ଼ୁଟି ମଣିଷର ପ୍ରତିଟି ଆବାସିକ ବାସ୍ତବତାରେ । ଅତଏବ କିଛି ବର୍ଷ ତଳର ଚିତାମୁରୁଜ ଭଳି ସାଂସ୍କୃତିକ ଆବଶ୍ୟକତା ନ୍ୟୁନ ମନେହେଉଛି ଆଧୁନିକ ମଣିଷର ସଭ୍ୟ ଜୀବନରେ ଏବେ ।

ସୁବନିଭଳି ବିବାହଯୋଗ୍ୟା କନ୍ୟାମାନଙ୍କୁ ଏଣିକି ଝୋଟି ଚିତା, ମୁରୁଜର ପ୍ରାମାଣିକ ଯୋଗ୍ୟତା ଅପେକ୍ଷା, ପାଠପଢ଼ା (ପ୍ରମାଣପତ୍ର ସମ୍ଭୃତ) ବୁଣାବୁଣି, ଚାଇଁଚଟକ ଆଦି ଯୋଗ୍ୟତାରେ ପାରଦର୍ଶିତା ଦେଖେଇବାକୁ ପଡ଼ୁଛି ବିହାରର ସୌଦାଗରମାନଙ୍କ ନିକଟରେ ।

ଓଡ଼ିଶୀ ଝୋଟି, ଚିତା, ମୁରୁଜ, କିଛି ବର୍ଷ ତଳେ ଥିଲା ଏକ ପାରିବାରିକ ଚାରୁକଳା । ଘରେ ଘରେ ଏଭଳି ହସ୍ତକର୍ମର ଚିତ୍ରଫରି ଝୁଲି ରହୁଥିଲା ଯୁଗ ଯୁଗ ଧରି । ପର୍ବପର୍ବାଣୀ, ଓଷାବ୍ରତ, ଭଇମନ୍ଦର ଜୀବନ ସହିତ, ଏ କଳା ଥିଲା ଅଙ୍ଗାଙ୍ଗୀଭବେ ଜଡ଼ିତ । ମାଣଓଷା ପାଇଁ ଚିତା, ଷଷ୍ଠୀଓଷା ପାଇଁ ଚିତା, ରକ୍ଷାପଞ୍ଚମୀ ପାଇଁ ଚିତା, ଧାନଘର ପାଇଁ ଚିତା, କଳେଇଗଦା ପାଇଁ ଚିତା, ବୋଇତ ବନ୍ଦାଣ ପାଇଁ ମଧ୍ୟ ଚିତା । ଚିତା-ଝୋଟି ଯେମିତି ଓଡ଼ିଆପ୍ରାଣର କଳାତ୍ମକ ଅଭିବ୍ୟକ୍ତି ! ଘରର ସୌନ୍ଦର୍ଯ୍ୟ ପାଇଁ ପରିବାରର ଝିଅବୋହୂମାନଙ୍କର ହାତଯଶ ପାଇଁ ଏଭଳି ପାରମ୍ପରିକ କଳା ଯେମିତି ଥିଲା ଗୋଟିଏ ଗୋଟିଏ ଘରେଇ ଲଳିତ କଳା ଏକାଡେମୀ । ପାଞ୍ଚ ବୋହୂଥିବା ଯୌଗିକ ପରିବାରରେ, ଚିତା, ଝୋଟି, ମୁରୁଜରେ ପାରଦର୍ଶିତା ଲାଭ କରିଥିବା ବୋହୂଟି ହୁଏତ ଥିଲା ସବୁଠାରୁ ଅଧିକ ମର୍ଯ୍ୟାଦା-ବନ୍ତ ରମଣୀ । କଳା ସହିତ ଅତୀତର ସାଧାରଣ ଗୃହିଣୀ ଜୀବନଟିକୁ ଶଚିପୂର୍ଣ୍ଣଭବରେ ଜଡ଼ିତ କରଇବାରେ ଏଭଳି ସୁଯୋଗ କିପରିଭବରେ ସଂସ୍କୃତସମ୍ପନ୍ନ ତାହା ସହଜରେ ଧାରଣା କରଯାଇପାରେ ।

ସିମେଣ୍ଟ ଘରରେ ଯେ, ଝୋଟି, ଚିତା ବା ମୁରୁଜର ଲାବଣ୍ୟ ରୂପରେଖ ସୂଚିତ କରଯାଇ ପାରିବ ନାହିଁ, ସେକଥା ନୁହେଁ, କିନ୍ତୁ ମାଟି-କାନ୍ଥର କାନ୍ଭସରେ ଅଙ୍କା ଚିତା ଝୋଟି- ନିଶ୍ଚିତଭବରେ ଅନନ୍ୟ । ପୁରୀ ଜିଲ୍ଲାର ରଣପୁରରେ, ଗଞ୍ଜାମ ଜିଲ୍ଲାର ସୋରଡ଼ାରେ, ଧରକୋଟ୍, ଭଞ୍ଜନଗର —ଘୁମୁସର ଆଦି ଛୋଟ ଛୋଟ ଅଞ୍ଚଳ ବା ଗାଁ ମାନଙ୍କରେ କନିସିରି ପତର ରସରେ ମାଟିକାନ୍ଥକୁ ଲିପି, ଖଡ଼ିଘୋରି ଗୃହିଣୀମାନଙ୍କ ହାତରେ ଯେଉଁ ଚିତା ସବୁ ଅଙ୍କାଯାଏ ତାହା ବାସ୍ତବିକ୍ ଓଡ଼ିଆ ସୌନ୍ଦର୍ଯ୍ୟ ଚେତନାର ଏକ କୋମଳ ଦୃଷ୍ଟାନ୍ତ । ଓଡ଼ିଆ ଘରମାନଙ୍କରେ ତଳଚିତା, ପିଠଉଚିତା, ମୁରୁଜ-ଝୋଟି, କାନ୍ଥଚିତା ଆଦି ବାଧ୍ୟ ଅବସରଗୁଡ଼ିକ ଉଭୟ କଳା ଏବଂ ପରମ୍ପରର ସମନ୍ୱୟକାରୀ ନୁହଁନ୍ତି ବୋଲି କଣ ସ୍ୱୀକାର କରଯାଇପାରିବ ?

ଓଡ଼ିଆ ଘରମାନଙ୍କରେ ଚିତାଝୋଟି ମୁରୁଜ ଆଦି ଥିଲା ଏକ ଧାର୍ମିକ ପରମ୍ପର । ବାରଓଷା ତେର ବ୍ରତରେ ଅଙ୍କା ଯାଉଥିବା ଏଭଳି ଅନେକ ଅଙ୍କନ ବ୍ୟତିରେକ ପ୍ରାୟ ବର୍ଷକରେ ଗୋଟିଏ ଦିନ ଘରକୁ, ଚିତାରେ ସଜେଇଦେବାକୁ ପଡ଼ୁଥିଲା ପୂର୍ବେ । ସାଧାରଣତଃ ମାଣଓଷା ଗୁରୁବାରରେ ଏ କାର୍ଯ୍ୟଟି ବ୍ୟାପକଭବରେ ସମ୍ପନ୍ନ ହୋଇଥାଏ । ଅନେକ ଅଞ୍ଚଳରେ

କେତେକ ସମ୍ଭ୍ରାନ୍ତ ପରିବାରରେ ଚିତାଘରମାନ ଥିବାର ନମୁନା ଏବେ ମଧ୍ୟ ରହିଛି । ଚିତା ସଂକ୍ରାନ୍ତରେ ସମ୍ପୂର୍ଣ୍ଣ ଚିତା ଘରଟିକୁ ଚିତାର ଅଳଙ୍କାରରେ ସଜେଇ ଦେଇ ପ୍ରତ୍ୟେକ ଓଡ଼ିଆ ଗୃହିଣୀ ସତେ ଯେମିତି ଆପଣା ହସ୍ତକର୍ମର ଏକ ପରୀକ୍ଷା ଦିଏ ଈଶ୍ୱରଙ୍କ ନିକଟରେ । ଓଡ଼ିଆ-ମାଟି-ଜୀବନର କଳାତ୍ମକ ଅଭିବ୍ୟକ୍ତି ଚିତାମୁରୁଜ ନୁହେଁତ ଆଉ କ'ଣ ?

ମାଟିଘର ଏବଂ ଚିତାଝୋଟି ଆଜିକାଲିର ଆଧୁନିକ ଦୃଷ୍ଟିଭଙ୍ଗୀରେ ପ୍ରାଚୀନ ମନେହେବା ସ୍ୱାଭାବିକ । କିନ୍ତୁ ହଜାର ହଜାର ମଧ୍ୟବିତ୍ତ ପରିବାରର ଗୃହିଣୀମାନଙ୍କ ପାଇଁ ଏଭଳି ବାଧ୍ୟକତା ଦିନେ ହୁଏତ ଥିଲା ଏକ ଦରକାରୀ ନିଯୋଗଭାବ । ସାଧାରଣ ମଧ୍ୟବିତ୍ତ ଗୃହିଣୀଟି ଘରପାଇଁ ଘେଷେଇବାସ ଛଡ଼ା ଅନ୍ୟାନ୍ୟ କାମ ସାରିଦେବା ପରେ କ'ଣ ବା କରୁଥାନ୍ତା ଆଉ ଅବସର ସମୟରେ ! ଗାଁ ଗହଳରେ, ଅବସର ସମୟରେ କୌଣସି କାର୍ଯ୍ୟରେ ଏଭଳି ଗୃହିଣୀମାନଙ୍କୁ ନିଯୁକ୍ତ ନରଖି ଅଣସମ୍ପନ୍ନ ଭାବରେ ରଖିବା ଅର୍ଥ କଳହ ଏବଂ କନ୍ଦଳର ସ୍ରୋତକୁ ଉନ୍ମୋଚିତ କରିବା ।

ଅତଏବ, ଚିତା, ଝୋଟି, ମୁରୁଜ ହିଁ ଥିଲା ଓଡ଼ିଆ ଗୃହିଣୀର ଅବସର ସମୟର ସମ୍ପନ୍ନ–ଭାବ । ସେଇଭଳି, ଆଳସ୍ୟର ବଶବର୍ତ୍ତୀ ହୋଇ ପରସ୍ପର କଳହରେ ବ୍ୟସ୍ତ ରହିବାର ସମ୍ଭାବନାକୁ–ଘର ଲିପାପୋଛା, ଝୋଟି, ଚିତା ବା ମୁରୁଜ ଆଦିର ବାଧ୍ୟ ପରମ୍ପରରେ ବାନ୍ଧି ରଖିଥିବା ମାଟିଘର ଗୁଡ଼ିକ କ'ଣ ଗାଉଁଲୀ ମଧ୍ୟବିତ୍ତ ଗୃହିଣୀମାନଙ୍କ ପାଇଁ ଏବେ ମଧ୍ୟ ଜରୁରୀ ନୁହନ୍ତି, ବୋଲି ଯୁକ୍ତି କରିହେବ ?

ମଣିଷ ଗୃହେଁ ସମ୍ପନ୍ନଭାବ । କର୍ତ୍ତବ୍ୟର ଗ୍ରନ୍ଥିକାନ୍ତ ମଣିଷକୁ ଜଡ଼ିତ କରି ରଖେ ଯେତିକି, ତା'ର ଦାୟିତ୍ୱ ସମ୍ପାଦନ ମଣିଷ ମନରେ ସାନ୍ତ୍ୱନା ଆଣେ ତା'ଠାରୁ ଅଧିକ । କର୍ତ୍ତବ୍ୟରତ ମଣିଷ ଅପେକ୍ଷା ଆଳସ୍ୟରତ ମଣିଷ କେଉଁ ମାତ୍ରାରେ ଜୀବନବାଦୀ ଅବା !

ସେ ଦୃଷ୍ଟିରୁ ମାଟିଘରର ଝୋଟିକଳା ଦିନେ ଥିଲା ଗାଉଁଲୀ ଜୀବନ ପାଇଁ ଏକ ସଂସ୍କୃତିସମ୍ପନ୍ନ ଉପାସନାମୂଳକ ଜଡ଼ିତଭାବ । ଝୋଟି, ଚିତା, ମୁରୁଜ ଲିଭି ଲିଭି ଆସୁଚି ଗ୍ରାମ୍ୟ ଜୀବନରୁ ଏବେ ଏବେ । ତା' ବଦଳରେ ଓଡ଼ିଆ ସାଂସ୍କୃତିକ ଧାରାର କେଉଁ ଦିଗଟି ଆମ କୃଷିଭିତ୍ତିକ ଗାଉଁଲୀ ଜୀବନରେ ପ୍ରାଧାନ୍ୟଲାଭ କରୁଚି ତାହା ଅବଶ୍ୟ ବିଚାରଣୀୟ ।

ଗାଁ ଗହଳର ଯୁବତିମାନଙ୍କ ପାଇଁ ବର୍ତ୍ତମାନ କେଉଁ ଲଳିତକଳାର ନିଯୋଗ ଉନ୍ମୁକ୍ତ, କିଏ କରିବ ତା'ର ସମୀକ୍ଷା !!

୧୪-୨-୮୫

# ହିଂସ୍ରକମାନଙ୍କ ହାଟ

ଅଧୁନାତନ ସମୟ ଯେ ଅଧିକ ହିଂସ୍ରତାର କ୍ଷେମଣ ହାତରେ କବଳିତ ସେ ନେଇ ଅନେକ ତଥ୍ୟ ଏବଂ ପରିସଂଖ୍ୟାନ ଆମକୁ ମିଳେ । ମିନିଟ୍‌କ ମଧ୍ୟରେ ପାଞ୍ଚଟି ଜଘନ୍ୟ ହିଂସାକାଣ୍ଡ ଘଟାଇ ପାରୁଥିବା ସହର-ମାନଙ୍କର ସଂଖ୍ୟା କିଛି କମ୍ ନୁହେଁ ଏ ପୃଥିବୀରେ ।

କେଉଁଠାରେ କେହି ପାଠ ପଢ଼ୁଥିବା ସ୍କୁଲ ଝିଅଟି ଉପରେ ପାଶବିକ ଅତ୍ୟାଚାର କଲଣିତ ଆଉ କେଉଁଠାରେ ଛାତ୍ରଟିଏ ସାଇକଲଟ୍ ବାଟେ କୁଳପତିଙ୍କ ଉପରେ ବର୍ଷଣ କଲଣି ଗୁଳି । କଥାମତେ ଟେଲିଭିଜନଟିଏ ଆଣିପାରି ନଥିବା ବୋହୂଟି ଦେହରେ କେଉଁଠି ଶାଶୁ ନିଆଁ ଲଗେଇ ଦେଲଣିତ, କେଉଁଠାରେ କେହି ପୌଢ଼ କଳାଗୋରର ଭେଦାଭେଦ ସୃଷ୍ଟି କରି ଆରମ୍ଭ କଲଣି ଗଣହତ୍ୟା ।

ଦିନୁଦିନ ମଣିଷ ସଭ୍ୟ ହେଉଛି । ଗ୍ରହ ଗ୍ରହାନ୍ତରକୁ ବଢ଼ାଉଛି ପାଦ । ପୃଥିବୀ ଅଧିକ ଆଲୋକିତ ହେଉଛି ବିଜ୍ଞାନୀ ମଣିଷର ଆଣବିକ ଝକମକିରେ । ଅଥଚ ମଣିଷ ମଣିଷଠାରୁ ଦୂରେଇ ଯାଉଚି କେତେ ! ଜଣେ ଅନ୍ୟଜଣକର ଜୀବନକୁ କେତେ ସହଜ ମଣୁଛି ଏବେ ! ଭଗବତ ଭୟର ପାତଳପରଦା ହଟିଯିବା ପରେ ଏ ସଭ୍ୟ ମଣିଷଗୁଡ଼ିକ ଯେମିତି ନଗ୍ନ ତରବାରୀ ପରି ଉଦ୍ୟତ ହିଂସ୍ରତାରେ ପୂର୍ଣ୍ଣ । ତାଡ଼ାଏ ନୋଟ୍‌ର ଉଷୁମ ଆଶ୍ୱାସନା ପାଇଲେ ଯେ କେହି ହୁଏତ ଉଠେଇ ଦେଇପାରେ ରିଭଲ୍‌ଭର ଭରା ଜଘନ୍ୟ ହାତକୁ । ବ୍ୟକ୍ତିଗତ ସ୍ୱାର୍ଥର ପ୍ରତିଶ୍ରୁତିଟିଏ ମାତ୍ର

ପାଇ ମଣିଷଟିଏ ଯୁଦ୍ଧ ଘୋଷଣା କରିଦେଇପାରେ ସମଗ୍ର ମାନବିକତା ବିରୁଦ୍ଧରେ ବର୍ତ୍ତମାନ ।

ପାଦରୁ ଶୃଙ୍ଖଳ ଛିନ୍ନ ହେଲେ ସ୍ୱାଧୀନତା ଆସେ । ଡେଣାରୁ ଯାପେଣୀ ଖସେଇ ଦେଲେ ଉଡରଣ ପାଇଁ ଆକାଶ ନିଅଣ୍ଟ ହୁଏ । ସ୍ୱାଧୀନତାର ଅମୃତ ପାଇ ମଣିଷ ଦେବତା ହେବାର ସ୍ୱହେଁ । କିନ୍ତୁ କାହିଁ ଦେବତୁଲ୍ୟ ଜୀବନ ! ବର୍ତ୍ତମାନର ପୃଥିବୀରେ ଅହିଂସାର ଅନୁପାତ କେତେ? ନିଜକୁ ସଭ୍ୟ ସଭ୍ୟ ବୋଲି କହି ସ୍ୱର୍ଦ୍ଧାରେ ଫାଟି ପଡ଼ୁଥିବା ସ୍ୱାଧୀନତାର ମୁକୁଟପିନ୍ଧା ଏ ଚତୁର ମଣିଷଗୁଡ଼ିକ ଆପଣା ଜାତି, ଆପଣା ଗୋଷ୍ଠୀର ମୃତ୍ୟୁ ସଙ୍ଗୀତ ପାଇଁ ଏତେ ଉଚ୍ଚକିତ ଉତ୍କଣ୍ଠାରେ ଆଗଭର କାହିଁକି ? କାହିଁକି ଏ କୂଟନୀତି, କାହିଁକି ଏ ଆଣବିକ ଅସ୍ତ୍ର ?

ସି.ଆଇ.ଏ:, କେ.ଜି.ବି ପରି ଅସୁରଗୁଡ଼ିକୁ ସାଦା ସରଳ ମଣିଷମାନଙ୍କର ସବୁଜ ବନାନୀ ଭିତରକୁ ପଠେଇଦେଇ ସଭ୍ୟ ସମ୍ଭ୍ରାନ୍ତ ବୋଲଉଥିବା ଦେଶଗୁଡ଼ିକ ପ୍ରକୃତରେ କ'ଣ ଶାନ୍ତିରେ ଅଛନ୍ତି ? ନିଜ ପକେଟରେ ସେମାନଙ୍କର ବିପୁଳ ସମ୍ପଦର ଖାମଖିଆଲୀ ଉଷ୍ଣତା, ନିଜ ଘର ଭଣ୍ଡାରରେ ଉଛୁଳି ପଡ଼ୁଥିବା ପସରା, ପରିବେଶରେ ସଭ୍ୟତାର ଝଲମଲ ଆଲୋକ । ଅଥଚ ସେତିକି ଯଥେଷ୍ଟ ନୁହେଁ । ଜୀବନ ପାଇଁ ସେମାନଙ୍କର ନିଜ ହାତରେ ମୃତ୍ୟୁଟିଏ ଘଟେଇବା ଯେମିତି ନିହାତି ଜରୁରୀ । ସବୁ ଖାଇବା ପରେ ବି ରକ୍ତ ଟୋପାଏ ଲୋଡ଼ା ।

ମଣିଷ କ'ଣ ସତରେ ଶାନ୍ତିକାମୀ ନୁହେଁ ? ହିଂସ୍ରତା ହିଁ ତା'ର ଅସଲ ପରିଚୟ । ହିଂସାର କଣ୍ଟାଗଛଟିଏ ନଥାଇ କେଉଁଠାରେ ଏକ ମିଲିମିଟର ଭୂମି ଅବା ଅଛି ଏ ପୃଥିବୀରେ ?

ଭିଏତନାମର କେଉଁ ଜନ୍ମ ହୋଇ ଅଧା ବାହାରିଥିବା ଶିଶୁଟି ଉପରେ ଆଣବିକ ପ୍ରହାର କେବେ ହୋଇ ଯାଇଛି ତ, କେବେ ଦକ୍ଷିଣ ଆଫ୍ରିକାରେ ଧାଡ଼ିଏ କଅଁଳ ସ୍କୁଲପିଲାଙ୍କ ପେଟ ଭିତରେ ସ୍ରୋତପରି ଲର୍ମି ଯାଇଛି ଏକ୍ ପରେ ଏକ୍ ମେସିନଗନ ଗୁଳି । ଇଥିଓପିଆର ଚଡ୍‌ଚଡ୍ ଫାଟି ଯାଉଥିବା ଖେକିଲା ମାଟିରେ ହଜାର ହଜାର ଜୀଅନ୍ତା ମଣିଷ ଦୁର୍ଭିକ୍ଷର ଗିଲୋଟିନ୍‌ରେ ବିଡ଼ା ବିଡ଼ା ହୋଇ କଟିଯାଉଥିବା ବେଳେ ତାରି ଉପର ଦେଇ ଉଡ଼ିଯାଉଥିବା ବୋଇଙ୍ଗ୍ ବିମାନରେ ବଟର୍‌ଚିକେନ୍ ରୋଷ୍ଟ୍ ହାକୁଟିକୁ ସଙ୍ଗତି ଦେଇ, କେହି ଉଠେଇନେଉଚି ଗୋଟିଏ ପେଗସେରୀ ।

ମାଟିରେ ମଣିଷ । ଆକାଶରେ ମଣିଷ । ପ୍ରାଚୁର୍ଯ୍ୟରେ ମଣିଷ । ପରାଭବରେ ମଣିଷ । ସୁସ୍ଥସବଳ ମଣିଷ । ମଡ଼ାପରି ରୋଗରେ ମଡ଼ ମଡ଼ ମଣିଷ । ଗଦା, ଗଦା, ମୁଠା ମୁଠା ବିଞ୍ଛାଡ଼ି ଦେଉଥିବା ମଣିଷ । ଆକାଶରୁ

ଟୋପାଟେ ମାରୁଥିବା ବେଳେ ଚରମ ଉତ୍କଣ୍ଠାରେ ହାତ ପତାଉଥିବା ମଣିଷ । ସବୁଆଡ଼େ ମଣିଷ । ମାତ୍ର ମଣିଷ ମଣିଷ ଭିତରେ ଥିବା ସେଇ ଦେବତାଟି କାହିଁ ?

ପୃଥିବୀ ସମସ୍ତଙ୍କର । ମାଟି ସମସ୍ତଙ୍କର । ପାଣି, ପବନ, ଆଲୋକ ଅନ୍ଧାର, ଉପରେ ସବୁ ମଣିଷର ସମାନ ଅଧିକାର । ଏଠି ଫୁଲ ଫୁଟେ । ଫଳ ଫଳେ । ପ୍ରଜାପତି ଉଡ଼େ । ପକ୍ଷୀଟିଏ ଗାଉଥାଏ ଗୀତ, ସବୁଦିନେ ସମାନ ସ୍ୱରରେ । ବାଇ ଚଢ଼େଇଟିଏ ବସା ତିଆରି କରେ, ସେଇ ସମାନ ଢାଞ୍ଚରେ ।

ପ୍ରଶ୍ନଟିଏ ହୋଇପାରେ— ବାଇ ଚଢ଼େଇଟି ସତରେ କେଡ଼େ ବୋକା ! ଗୋଟିଏ ବେଣ୍ଟିରେ ଗୋଟିଏ ଘର ତା'ର । କେଡ଼େ ନିପୁଣ, କେଡ଼େ କର୍ମଠ ତା'ର ଥଣ୍ଟ, ହେଲେ ଗୋଟିଏ ବସା କାହିଁକି, ପୁଣି ସେଇ ଏକାପରି ? ବାଇ ଚଢ଼େଇଟିଏ ଧନୀ ବୋଲାଇବା ପାଇଁ ଚାରିମହଲର ବସାଟିଏ ଓହଳେଇ ଦଉନି କାହିଁକି ତାଳବଣରେ ? ଅନ୍ୟର ବସାକୁ ଛିଣ୍ଡାଇ ଆଣି, ଯୋଡ଼ିଦେଉନି କାହିଁକି ନିଜର ବ୍ୟକ୍ତିଗତ ସାମ୍ରାଜ୍ୟରେ ! ନିପାରିଲା ଆଉ ଜାତି ଭାଇଟିଏ ଶଙ୍କି ଯାଆନ୍ତା ତା'କୁ ଦେଖି । ଚାରି ମହଲ, ପାଞ୍ଚ ମହଲ, ମହଲ ପରେ ମହଲ । ସବୁଠାରୁ ସବଳ ଥଣ୍ଟିଆ ହୋଇଯାଆନ୍ତା ପୁଞ୍ଜିପତି, ଆଉ ଆନମାନେ ଦାସ । ଦିନରାତି ଖଟନ୍ତେ ପାଦରେ ।

ବାଇ ଚଢ଼େଇଠାରୁ ମଣିଷ ଢ଼େର ଚାଲାକ୍ । ମଣିଷତ ସଭ୍ୟ । କେତେ ଖଞ୍ଜେଇ ମଣିଷ, ଆଉ ମଣିଷଙ୍କ ଗଳାରେ ଗୋଡ ପକେଇ ଉଠିଯାଉଛି ଉପରକୁ । ପଡ଼ୋଶୀଘର ଚୁଲିରେ କଣା, ହାଣ୍ଡିରେ କଣା, ହେଲେ ତା' ନିଜର କୋଠାଟି ଆହୁରି ବଡ଼ ହେଉ, ତା' ହାତରୁ ଯେତେ ବୁଣିଯାଉଛି ଯାଉ । ବୁଣି ଦେବାତ ଆଭିଜାତ୍ୟ । ନଷ୍ଟକରି ଦେବାତ ହିଂସ୍ର ରାଜକୀୟତା । ହିଂସ୍ରତା ହିଁ କ୍ଷମତା ଓ ଆଭିଜାତ୍ୟ ନୁହେଁକି ? ଜଣେ ସମ୍ପତ୍ତି ଠୁଳ କରିବା କେଉଁ ଅହିଂସା ଅବା ।

ପୃଥିବୀରେ, ନିଅର୍ଣ୍ଣିଆ ମଣିଷମାନଙ୍କର ପ୍ରତିନିଧିତ୍ୱ କରିଥିଲେ ଗାନ୍ଧିଜୀ । ଏଇ ପ୍ରତିନିଧିତ୍ୱ କଲଦିନୁ ସେ ଅଧାଲଙ୍ଗଳା ରହିଲେ, ଅନ୍ୟସହ ଭଗବାଣ୍ଟିବାର ମନୋଭବକୁ ପ୍ରତୀକ କରିବା ପାଇଁ । ଆଜି ତାଙ୍କ ସମାଧି ଦୁଆରେ ସେଥିପାଇଁ ତାବିଜଟିଏ ଝୁଲୁଛି-ଗୋଟିଏ ବାଣୀର ତାବିଜ ।

ସେ କହିଛନ୍ତି—ମୁଁ ଆପଣମାନଙ୍କୁ ତାବିଜଟିଏ ଦେବାକୁ ଚାହୁଁଛି । ଆପଣ କେତେ କେତେ ପଦକ୍ଷେପ ନେବାକୁ ଚେଷ୍ଟା କରୁଛନ୍ତି, କେତେ ଯୋଜନା ମଧ୍ୟ କରୁଛନ୍ତି, କିନ୍ତୁ ମନେପକାନ୍ତୁ ତ, ଆପଣ ଦେଖିଥିବା ଦୀନ,

ହୀନ ଦରିଦ୍ର ଲୋକଟିର, ସେ ଯୋଜନା କୌଣସି ଉପକାରରେ ଆସୁଛିକି ?
ଥରେ ମାତ୍ର ମନେପକାନ୍ତୁ ସେ ମଣିଷଟିର ବିକଳ ମୁହଁଟିକୁ ।

ରଜଘାଟ ଭିତରକୁ ଜୋତା ବାହାରକରି ପଶିଲା ବେଳେ ବାମପଟେ ଏ ତାବିଜଟି ମାର୍ବଲ ପଥର ଉପରେ ଲିପିବଦ୍ଧ । ପୃଥିବୀ ସାରା କୌଣସି ଦେଶର ସଭ୍ୟ ଶାସକ ଏଭଳି ନାହିଁ, ଯେ ଭାରତ ଆସିଛି, ଅଥଚ ଫୁଲମାଳ-ଟିଏ ଗାନ୍ଧିଜୀଙ୍କ ସମାଧି ଉପରେ ଦେବା ପାଇଁ ଇଛାକରି ଯାଇନାହିଁ ସେଇ ଦ୍ୱାରରେ । ମାତ୍ର ତାବିଜଟି ପାଖରେ, ଶପଥଟିଏ ସେ ନେଇନାହିଁ କେବେ ।

ଦରିଦ୍ର କାଙ୍ଗାଳର ଆକୁଳ ମୁହଁଟିକୁ ମନେପକାଇବା ହିଁସ୍ରକ ସମ୍ପତ୍ତିଶାଳୀ ଲୋକ ପାଖରେ ସତରେ କ'ଣ ସମ୍ଭବ ! !

୨୭-୨-୮୫

## ପାଢ଼ୀବାବୁ ପି. ଏଚ୍. ଡ଼ି. କରୁଛନ୍ତି

କୃତ୍ତିବାସ ବାବୁ ଧର୍ମଗଡ଼ ସରକାରୀ କଲେଜରେ ଏକୋଇଶ ବର୍ଷକାଳ ଅଧ୍ୟାପନା କଲାପରେ, ଏବେ ଯାଇ ନାଗପୁର, ଦୀନବନ୍ଧୁ ବିଶ୍ୱ-ବିଦ୍ୟାଳୟରେ । ପାଠକେ ବିଗ୍ଭରୁଥିବେ ଅଧ୍ୟାପକ କୃତ୍ତିବାସ ସେଠେଇଁ ପ୍ରଫେସର ପଦରେ ବାହେଲ ହେଲେ ପରା ! ନାଇଁ ନାଇଁ- ସେ କଥା ନୁହେଁ; କୃତ୍ତିବାସ ବାବୁ ସେଠିକି ଯାଇଛନ୍ତି, ଛାତ୍ର ହୋଇ । ସେଠାରେ ଢେର୍ ଗୁଡ଼ାଏ ଗବେଷଣା କରିବେ ସେ ।

ଆଜିକାଲି ଅଧ୍ୟାପନା ପାଇଁ ଗବେଷଣା ନିହାତି ଆବଶ୍ୟକ । ଅଧ୍ୟାପକ ଗ୍ଭକିରିରେ ପଦୋନ୍ନତି ପାଇଁ ଗବେଷଣାଗତ ପାରଦର୍ଶିତା ଜରୁରୀ, ସଫଳ ଅଧ୍ୟାପନା ନୁହେଁ । ବୈଲୋଚନ ବାବୁ ପାଠ ପଢ଼େଇ-ବାରେ ଖୁବ୍ ତୀକ୍ଷ୍ଣ କିନ୍ତୁ ପି. ଏଚ୍. ଡି. ନ ଥିବାରୁ ପଦୋନ୍ନତି ଘର ତାଙ୍କର ଶୂନ, ହେଲେ ଗ୍ଭଳିଶ ବର୍ଷରେ ଏବେବି ପାଠ ପଢ଼ାଇଲାବେଳେ ଥଅ ଥଅ, ମଅ ମଅ ହେଉଥିବା ଚକ୍ରପାଣି ସାମଲ ତାଙ୍କଠାରୁ ବୟସରେ ଊଣା ହେଲେ ବି, ପି. ଏଚ୍. ଡି. ଆଲେକ ଯୋଗୁ, ସେ ପ୍ରଫେସର ।

ତେଣୁ କୃତ୍ତିବାସ ବାବୁ ପି. ଏଚ୍. ଡି. ଶିକାର ପାଇଁ ଏବେ ଅଣ୍ଟା ଭିଡ଼ିଚନ୍ତି । ପଦୋନ୍ନତି କାହାର ଲୋଡ଼ା ନାହିଁ ?

ଶାସ୍ତ୍ରରେ ଅଛି, ଘର ନ ଛାଡ଼ିଲେ ବିଦ୍ୟା ହାସଲ ହୁଏନି । ପିଲ-ଛୁଆଙ୍କର କେଁ କଟର, ଚେଁ ଗ୍ଭଁ ଜଞ୍ଜାଳ, ସ୍ତ୍ରୀଙ୍କର 'ହଇଏ ଶୁଣୁଚ', 'ହଇଏ ଶୁଣୁଚ'ର ରୋକଟ ତାଳ ଭିତରେ କ'ଣ ପି. ଏଚ୍. ଡି. ହୁଏ ? ଅତଏବ କୃତ୍ତିବାବୁଙ୍କୁ ଅଗତ୍ୟା ଘର ଛାଡ଼ିବାକୁ ପଡ଼ିଚି । ସାନପୁଅର ଦଗେଟି କଥା

ନାଗପୁରରେ ମନେପଡ଼ି, ହୃଦୟ ତା'ଙ୍କର ଦହିଖୁଆ ପରି ମର୍ଛି ହଉଚି, କିନ୍ତୁ ସେ କ'ଣ କରିବେ—ସରକାର କହୁଚନ୍ତି ପି. ଏଚ୍. ଡି. ଟିଏ ଲୋଡ଼ା ।

ଅନ୍ତଦିନ ତଳେ ସରକାର ଜାଣିପାରିଥିଲେ ଯେ, ଭଲ ଭଲ ଛାତ୍ର-ଗୁଡ଼ାକ ଶିକ୍ଷାକ୍ଷେତ୍ରକୁ ନ ଆସି ଏବେ ପଇସା ଲୋଭରେ ଇଆଡ଼େ ସିଆଡ଼େ ପଳେଇ ଯାଉଚନ୍ତି । ଶିକ୍ଷାଦାନ ତେଣୁ ଅଭଲଙ୍କ ହାତରେ ପଡ଼ୁଚି । ମସୁଧା ହେଲା ମେଧାବୀ ଛାତ୍ରଙ୍କୁ ଆକୃଷ୍ଟ କରିବା ପାଇଁ, ଅଧ୍ୟାପକ ଚାକିରିର ଦରମା ହାର ବଢ଼େଇ ଦେବା । ବିଚାରଟି ସାଧୁ । କିନ୍ତୁ କାମ ଆଦାୟ ନ କରି ଖାଲି ଦରମା ବଢ଼େଇ ଦେଲେ ଲାଭ କ'ଣ ? ଅନ୍ୟ ଅନ୍ୟ ଶ୍ରେଣୀର ଚାକିରିଆମାନେ ରେ'ରେ'କାର କରିବେ । ଅତଏବ ନିୟମ ହେଲା—ଅଧ୍ୟା-ପକମାନଙ୍କୁ ପାଞ୍ଚବର୍ଷ ଭିତରେ ଗବେଷଣା କରି କିଛି ଗୋଟାଏ ଫଳ ଫଳେଇବାକୁ ପଡ଼ିବ । ନ ହେଲେ ଆଉ ଇନ୍‌କ୍ରିମେଣ୍ଟ ନାହିଁରେ ବାପ !

ପରିବର୍ଦ୍ଧିତ ହାରରେ ଦରମା ପାଇଲେ ମଧ୍ୟ ଧର୍ମଗଡ଼ କଲେଜର ନିପାରିଲା ଅଧ୍ୟାପକ ଗୁଡ଼ାଏ, ଏଯାଏଁ ଗବେଷଣାର ଶ୍ରୀଗଣେଶ କରି ନାହାନ୍ତି, କିନ୍ତୁ କୃତ୍ତିବାସ ପାଢ଼ୀଏ ଆମର ଚତୁର ଲୋକ । ଆବଶ୍ୟକ ଫର୍ମ ଆଣି; ଆମେ ଗବେଷଣା କରିବୁ, ଆମର କ୍ଷେତ୍ର ଏଇଆ; ଏଇ ମାର୍ଗରେ ଗବେଷଣା କଲେ ଆମେ ଅମୁକ ଅମୁକ ଦିଗକୁ ଆଲୋକିତ କରିଦେବୁ ଇତ୍ୟାଦି ଜଣେଇ, ସେ ଦେଲେ ଆବେଦନ କରି । ଆବେଦନ ଗୃହୀତ ହେଲା । ମିଳିଲା ଫେଲୋସିପ୍ ।

ଅତଏବ ଗତବର୍ଷ ମଇମାସ ପହିଲାରେ ଅଧ୍ୟାପକ କୃତ୍ତିବାସ ପାଢ଼ୀ, ଇତିହାସ ବିଭାଗ, ଧର୍ମଗଡ଼ କଲେଜ, ଧର୍ମଗଡ଼ରୁ ଦାୟିତ୍ୱମୁକ୍ତ ହୋଇଯାଇ ଜଏନ୍ ହେଲେ ଦୀନବନ୍ଧୁ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗରେ । ତାଙ୍କର ପଦ ହେଲା "ଟିଚର୍ସ୍ ଫେଲୋ"। ଗାଇଡ୍ ହେଲେ ପ୍ରଫେସର କନ୍ଦୁନାରାୟଣ ଦେ ।

ପାଢ଼ୀବାବୁଙ୍କର, ଦରମାକୁ ଦରମା ସୁରକ୍ଷିତ । ତା' ଉପରେ ପୁଣି ସେଠାରେ ଚଳିବାକୁ ଭତ୍ତା । ଏବଂ ତା' ସାଙ୍ଗକୁ କିଛି ମୋଟାଏ କଣ୍ଟିଜେନ୍‌ସି ଗ୍ରାଣ୍ଟ । ତା'ଙ୍କ ତୁଣ୍ଡରୁ ଯାହା ଶୁଣିବାକୁ ମିଳେ, ପଇସାପତ୍ରରେ ବର୍ତ୍ତମାନର ଏ ଗବେଷଣା ଲାଇନ୍‌ଟି ସେତେ ଶୁଖା ଖଡ଼ଖଡ଼ିଆ ନୁହେଁ; ଓଲଟି ବାଗ ଜଣାଥିଲେ ଦୁଇ ପଇସା ଗ୍ରାଣ୍ଟକରି ଆଣିହବ ।

କଥାଟା ଗୁରୁତ୍ୱପୂର୍ଣ୍ଣ । ପାଠକେ, ବୋଲିପାରନ୍ତି ଏ ଦିଗରେ ଏତେ ପଇସା ଖର୍ଚ୍ଚ କିଆଁ ? ଯେ ଅଧ୍ୟାପକ ହେଲା ସେ କ'ଣ ଭଲ ଗବେଷଣା କରିପାରିବ ବୋଲି କିଛି ମାନେ ଅଛି ନାଁ ଯେ ଭଲ ଗବେଷଣା କରିଛି, ସେ ଭଲ ଅଧ୍ୟାପକଟିଏ ବୋଲାଉଛି ! ଆମ୍ଭର ଉତ୍ତର ହେଲା ଗବେଷଣା

ପାଇଁ ମୁଣ୍ଡଟି ଚିନ୍ତାଶୂନ୍ୟ ହେବା ଆବଶ୍ୟକ । ଅତଏବ ପ୍ରଥମେ ଅର୍ଥଚିନ୍ତାଟି ଦୂର ହେବା ବିଧେୟ । ଆଉ ଅଧ୍ୟାପକଙ୍କର ପଢ଼ାପଢ଼ି କରେଇବାର କ୍ଷମତା ଉପରେ ଯେଉଁ ପ୍ରଶ୍ନଟି ସେ ସମ୍ପର୍କରେ କିଛି ମନ୍ତବ୍ୟ କରିବା ନିରର୍ଥକ । ଅଧ୍ୟାପକଟିଏ ଭଲ ପଢ଼ାଉ; ଏକଥା କେହି ସତରେ କ'ଣ ସାମାଜିକ ଭବେ ଆବଶ୍ୟକ କରନ୍ତି ?

ଆମ୍ଭ ଜାଣତରେ ଆଜିକାଲି ଅଧ୍ୟକ୍ଷମାନେ ଅଧ୍ୟାପନା ଗୃହ ପରି-ଦର୍ଶନ କରିବା ସମ୍ପୂର୍ଣ୍ଣ ବନ୍ଦ । ସ୍ଥଳବିଶେଷରେ ନୂଆ କଲେଜମାନଙ୍କର ଅଧ୍ୟାପକମାନଙ୍କ ଅପେକ୍ଷ ଅଧ୍ୟକ୍ଷ ବୟସରେ ଯୁବକ—କାରଣ କଲେଜଟିକୁ ଗଢ଼େଇଥିବା ସେକ୍ରେଟେରୀଙ୍କର ସେ ଅମୁକ ଅଟନ୍ତି । ଚରିତ୍ରପତ୍ରଟି ଲେଖିଲବେଳେ ଅମୁକ ବ୍ୟକ୍ତି ଜଣେ ବାଗ୍ମୀ ଅଧ୍ୟାପକ ବୋଲି ବୟାନ ଦେଇ ଉତ୍ସାହିତ କରିବା ଅଧ୍ୟକ୍ଷ ବୋଧେ ଶିକ୍ଷାକ୍ଷେତ୍ରରେ ଜନ୍ମହୋଇ ନାହାନ୍ତି ଏଯାଏଁ ଓଡ଼ିଶାରେ । ହାଇସ୍କୁଲରେ ଭଲ ପାଠ ପଢ଼େଇଲେ, ରାଜ୍ୟ-ପାଳ ବା ରାଷ୍ଟ୍ରପତି ପୁରସ୍କାର ମିଳେ; କିନ୍ତୁ କଲେଜରେ ଭଲ ପାଠ ପଢ଼ାଇବା ପାଇଁ ସେଭଳି ପ୍ରୋତ୍ସାହନ ବୋଧେ ଆବଶ୍ୟକ ନାହିଁ । ପୋଲିସ୍, ପ୍ରଶାସନ, ହାଇସ୍କୁଲ ଶିକ୍ଷା, ବିଚାରପତିତ୍ୱ, ବ୍ୟାଙ୍କ, କମ୍ପାନୀ ଆଦି ସବୁକ୍ଷେତ୍ରରେ ଚାକିରି ପୂର୍ବରୁ ଟ୍ରେନିଂ ଆବଶ୍ୟକ, କିନ୍ତୁ ଅଧ୍ୟାପନା କ୍ଷେତ୍ରରେ ଟ୍ରେନିଂ ଦରକାର ନାହିଁ । ଯେ ଯେମିତି ଘୋଷାରିଲା ପାଠକୁ । କେହି ନୋଟ୍ ଡାକି, କେହି ତତ୍ତ୍ୱ କମ୍, ଭଷା ବେଶିର ଉଚ୍ଛ୍ୱାସ ତରଙ୍ଗ ଛୁଟାଇ, ଆଉ କେହି ମୋଟେ କ୍ଲାସ ନ ନେଇ ।

ଆଜିକାଲି ଅଧିକାଂଶ କଲେଜରେ କ୍ଲାସ ଅଧ୍ୟାପନା ପାଠ୍ୟକ୍ରମ ସହ ଦୁର୍ବଳ ସାମଞ୍ଜସ୍ୟ ଥିବା ବକ୍ତୃତାଟିଏ ମାତ୍ର ବୋଲି କହିଲେ, ସତରେ କ'ଣ ଭୁଲ ହେବ ?

ବିଶେଷକରି ସମାଜ ବିଜ୍ଞାନ ସମ୍ବନ୍ଧୀୟ ବିଷୟଗୁଡ଼ିକର ଅଧ୍ୟାପନା ସଫଳ ହେଉନି ଆଜିକାଲି । ଆଜିକାଲି ପି.ଏଚ୍.ଡି. ବା ଡି.ଲିଟ୍.ଡିଗ୍ରୀଧାରିଟିଏ ମିଳିଯିବା ସହଜ କିନ୍ତୁ ଭଲ ଅଧ୍ୟାପକଟିଏ ପାଇବା କଷ୍ଟ । ଗବେଷଣା ଓ ଅଧ୍ୟାପନା କ'ଣ ଏକା କଥା ? ଗବେଷଣା ଏକ ଇଚ୍ଛାଧୀନ ପ୍ରବୃତ୍ତି । ତା'କୁ ବାଧ୍ୟ ବାଧ୍ୟକତାରେ ଅସୁଲ କରିବା ଅର୍ଥ ନିମ୍ନ ମାନର ବିଷୟ ବସ୍ତୁ ଓ ଅସିଦ୍ଧ ସିଦ୍ଧାନ୍ତ ସଂଗ୍ରହ କରିବା । ଗବେଷଣା କାର୍ଯ୍ୟଟିଏ ଏତିକି ଦିନରେ ସରିଯିବ, କହୁଥିବା ଲୋକଟି କ'ଣ ସତରେ ଗବେଷଣାର କିଛି ଅର୍ଥ ବୁଝେ ?

ସେ ଯାହା ହେଉ, ବର୍ତ୍ତମାନ ବିଜ୍ଞ ଜନମାନେ ବୋଧେ ବିଚାରିଛନ୍ତି, ଅଧ୍ୟାପକମାନଙ୍କୁ ଅଧିକ ଦକ୍ଷ କରିବା ପାଇଁ ତାଙ୍କ କାନ୍ଧରେ ଗବେଷଣାର ଗାଣ୍ଡିବଟିକୁ ପକେଇଦେବା ଦରକାର । ପି.ଏଚ୍.ଡି: ନକଲେ କି ଅଧ୍ୟାପକ ? ପାଠପଢ଼ା ନପଢ଼ା ପି.ଏଚ୍.ଡି. ଟିଏ ଆଣି ଶୀଘ୍ର ଥୁଅ । ବିହାରରୁ

ହେଉ କି ବିଲଚରୁ ହେଉ । ପି:ଏଚ୍.ଡି ସ୍ରୋତରେ ଏବେ ସାରା ଦେଶର କଲେଜ ଶିକ୍ଷା ଭସୁଚି । ଛୁଟି ନପାଇ, ପି.ଏଚ୍.ଡି: କରୁଥିବା ଅଧ୍ୟାପକଟିଏ ତା ଅଧ୍ୟାପନା ପାଇଁ କେତେ ମନଯୋଗୀ ହେବ ସେକଥା ଅବଶ୍ୟ ବିଚାରଣୀୟ ।

କୃତ୍ତିବାସ ପାଢ଼ୀ ଗବେଷଣାରୁ ଫେରିଲେ ସେଇ, ବାବର, ଆକବର, ଓ୍ୱେଲ୍‌ସଲି ପଢ଼େଇବେ । ଦିନ କଟିବ ସେଇ ପାଠକୁ ଘୋଷାରି ଘୋଷାରି । କିନ୍ତୁ ଗବେଷଣାର ଗାଣ୍ଡିବଟିକୁ ଧରି ସେ ବିଷୟ ବାଛିଛନ୍ତି । "ଓଡ଼ିଶାର ଗଡ଼ଜାତ ଗଜବାଟୀ ମାନଙ୍କରେ ପୋଇଲୀମାନଙ୍କର ଜୀବନ– ଏକ ଅଧ୍ୟୟନ (ଖ୍ରୀଷ୍ଟାବ୍ଦ ୧୮୪୦–୪୫) ।"

ଏ ବିଷୟଟି ପଢ଼ିବାକୁ ହୁଏତ ଆମୋଦ ଲଗିପାରେ; କିନ୍ତୁ ଧର୍ବଗଡ଼ ମହାବିଦ୍ୟାଳୟରେ ଅଧ୍ୟାପନା ପାଇଁ ଡଃ କୃତ୍ତିବାସ ପାଢ଼ୀଙ୍କୁ ଏ ଗବେଷଣା କେତେ ମାତ୍ରାରେ ସହାୟକ ହେବ ସେ କଥା ଜନତା ଜନାର୍ଦ୍ଦନ ବିଚାର କରନ୍ତୁ ।

୬–୩–୮୫

## ଓଡ଼ିଆ—୨

ଦିଲ୍ଲୀର ବାହାଦୁରଶାହ ଜାଫର ମାର୍ଗରେ ଶଙ୍କରଙ୍କର ଆନ୍ତର୍ଜାତୀୟ କଣ୍ଢେଇ ସଂଗ୍ରହାଳୟ । ଚମତ୍କାର ସ୍ଥାନଟିଏ । ଦେଶ ବିଦେଶରୁ ଜାତି-ଜାତିକା କଣ୍ଢେଇ ଅଣାଯାଇ ଭାରତର ସର୍ବଶ୍ରେଷ୍ଠ ବ୍ୟଙ୍ଗ ଚିତ୍ରକର ଶ୍ରୀ ଶଙ୍କର ପିଲ୍ଲାଇଙ୍କ ନାମରେ ଠୁଳ କରାଯାଇଛି ସେ ସଂଗ୍ରହାଳୟରେ । ପ୍ରତ୍ୟେକ ଦେଶର ଲୋକଙ୍କର ବେଶ ପୋଷାକର ବିଭିନ୍ନତା, ଗ୍ଳଚଳଣ ଫୁଟି ଉଠୁଚି କାଚକାନ୍ଥ ଭିତରେ ସଜ୍ଜା କଣ୍ଢେଇଗୁଡ଼ିକର ଚେହେରାରେ ।

ଧାଡ଼ି ଧାଡ଼ି କଣ୍ଢେଇମାନଙ୍କର ମେଳଣ । ତା'ପରକୁ ଭାରତର ବିଭିନ୍ନ ପ୍ରଦେଶର ଲୋକମାନଙ୍କର, ବେଶପୋଷାକରେ ସଜେଇ ହୋଇଥିବା କଣ୍ଢେଇମାନ । ଏପଟେ ପଞ୍ଜାବୀମାନଙ୍କର ମନୋହର ଭାଙ୍ଗ୍ରା ନୃତ୍ୟ । ସେପଟେ ଏକ ବଙ୍ଗାଳୀ ସମ୍ପ୍ରଦାୟର ବାହାଘର ଦୃଶ୍ୟ । "ବାବୁ ମଉସାୟ" ବରବେଶରେ ଧୋତି ପଞ୍ଜାବି ପିନ୍ଧି ଠିଆ ହୋଇଛନ୍ତି । ମୁଣ୍ଡରେ ତାଙ୍କର ସୋଲ ତିଆରି କୁଟିକମର ମୁକୁଟ । ପାଖରେ ଅବଗୁଣ୍ଠନବତୀ "ଆମାର-ବଧୁ" । ଏଇପରି ପ୍ରାୟ ପ୍ରତ୍ୟେକ ପ୍ରଦେଶର କୌଣସି କୌଣସି ସାମାଜିକ ଚଳଣି ସମ୍ବଳିତ ଦୃଶ୍ୟର ପଟଭୂମିରେ ଦଣ୍ଡାୟମାନ ଜାତିଜାତିକା ପୋଷାକରେ ମଣ୍ଡିତ ଅଧିବାସୀଗଣ । କେରଳୀ ରଣମୀଠାରୁ ଆରମ୍ଭକରି କାଶ୍ମୀରର ଡାଲ୍ ଲେକ୍‌ରେ ନୌକା ଚଳାଉଥିବା କୁର୍‌କୁରି ଲଳନା ପର୍ଯ୍ୟନ୍ତ ।

ସବୁଦିନେ ସ୍କୁଲ ପିଲମାନେ ବିଭିନ୍ନ ଜାଗାରୁ ଆସି, ଫୁରନ୍ତ ଉତ୍ସାହରେ ସ୍କୁଲପିଲମାନେ ବିଭିନ୍ନ ଜାଗାରୁ ଆସି, ଫୁରନ୍ତ ଉତ୍ସାହରେ ଥପଡ଼ ଥପଡ ପାଦ ପକେଇ କଣ୍ଢେଇଗୁଡ଼ିକୁ ଦେଖିବା ପାଇଁ ଏମୁଣ୍ଡରୁ ସେମୁଣ୍ଡ ଦଉଡ଼ନ୍ତି । ଏଇ ଦଉଡ଼ୁଥିବା ପିଲମାନଙ୍କ ଭିତରେ, ଦିଲ୍ଲୀରେ ରହି ଚାକିରୀ କରିଥିବା କୌଣସି ଓଡ଼ିଆ ଦମ୍ପତିଙ୍କର ସନ୍ତାନଟିଏ ଥିବ ହୁଏତ ! ସିଏ

ଦେଖୁଥିବ ସବୁ ରାଜ୍ୟର କଣେଇକୁ । ହେଲେ ଓଡ଼ିଶାର କଣେଇ କାହିଁ । କାହାନ୍ତି ଓଡ଼ିଆ ? ତା'ଙ୍କର କ'ଣ ଦେହ ନାହିଁ ନା ପୋଷାକ ନାହିଁ ? ଘରକୁ ଫେରି ଯଦି ସେ ମା' ବାପାଙ୍କୁ ଏ ବିଷୟରେ ପ୍ରଶ୍ନକରେ, ତେବେ ଓଡ଼ିଆଘର କ'ଣ ପିଲଟିକୁ ବୁଝେଇ ଦେବେ ଯେ–ଓଡ଼ିଆଙ୍କର କିଛି ବିଶେଷତ୍ୱ ନାହିଁ ବୋଲି ? ସତରେ ଆମର ପ୍ରାଦେଶିକ ପୋଷାକ କ'ଣ? କ'ଣ ଆମର ପ୍ରାଦେଶିକ ପର୍ବ ?

ଏଇ ବର୍ଷ ସାଧାରଣତନ୍ତ୍ର ବିଶେଷାଙ୍କ ପ୍ରକାଶ କଲାବେଳେ, ଭାରତର ଅନ୍ୟତମ ଲୋକପ୍ରିୟ ପତ୍ରିକା "ଦି ଇଲୁଷ୍ଟ୍ରେଟେଡ୍ ଉଇକ୍ଲି ଅଫ୍ ଇଣ୍ଡିଆ" ଗୋଟିଏ ଦୀର୍ଘ ଅଗ୍ରଲେଖା ପ୍ରକାଶ କଲେ–ଭାରତର ପଚାଶଜଣ ଗୁରୁତ୍ୱପୂର୍ଣ୍ଣ ଅଧିବାସୀ । ଏଥିରେ ସାରା ଦେଶରୁ ବାଛି ବାଛି କଳା, ବିଜ୍ଞାନ, ସଂସ୍କୃତି, ରାଜନୀତି, ସମାଜସେବା, କ୍ରୀଡ଼ା, ଚଳଚ୍ଚିତ୍ର, ସାହିତ୍ୟ ଓ ଅଭୂତପୂର୍ବ କୃତିତ୍ୱ ଆଦି କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିବା ବ୍ୟକ୍ତିମାନଙ୍କର ଫଟୋଚିତ୍ର ଓ ଜୀବନ ପରିଚିତି ପ୍ରକାଶ ପାଇଲା । ବହୁ ବଡ଼ ବଡ଼ ଲୋକଙ୍କର ପ୍ରଦର୍ଶନୀ ଦେଖିବାକୁ ମିଳିଲା କାଗଜ ପୃଷ୍ଠାରେ । ତାମିଲନାଡ଼ୁରେ ଚାକିରି କରିଥିବା ଓଡ଼ିଆଟିଏ ହୁଏତ ଖୋଲି ପଢ଼ୁଥିବ ସେ ପତ୍ରିକାଟିକୁ । ପଚାଶଜଣ ନାମଜାଦା ଭାରତୀୟଙ୍କ ଭିତରେ ଗୋଟିଏ ଓଡ଼ିଆକୁ ଖୋଜିଥିବ ସେ ନିଶ୍ଚେ । ହେଲେ ଓଡ଼ିଆ କାହିଁ ? ଓଡ଼ିଆଟିଏ ଏବେବି ପଚାଶଜଣ ଭାରତୀୟଙ୍କ ଭିତରେ ଜଣେ ନୁହେଁ । ଓଡ଼ିଶାରେ କଳା ସଂସ୍କୃତି ଠାରୁ ଆରମ୍ଭକରି ସମାଜସେବା ବା ରାଜନୀତି ପର୍ଯ୍ୟନ୍ତ କ'ଣ କୌଣସିଥିରେ କେହି ପାରଦର୍ଶିତା ଲାଭ କରିନାହାନ୍ତି ? ନାମଜାଦା ଲୋକଙ୍କର ତାଲିକା ପ୍ରସ୍ତୁତ କରୁଥିବା ବଡ଼ପଣ୍ଡାଟି ହୁଏତ ଉତ୍ତର ଦେଇପାରନ୍ତି ଏ ସଂଜ୍ଞା–ନ୍ତରେ । ହେଲେ, ଓଡ଼ିଶାକୁ ସେ କ'ଣ ସତରେ ଜାଣନ୍ତି ?

ଲୁଧିଆନା ରେଳବାଇ ଷ୍ଟେସନ୍‌ରେ ଟିକେଟ ବୁକିଂ କାଉଣ୍ଟର ପାଖରେ ପନ୍ତନଗର କୃଷି ବିଶ୍ୱବିଦ୍ୟାଳୟରେ ଗବେଷଣା କରୁଥିବା ଆମ ଓଡ଼ିଶାର ଘନଶ୍ୟାମ ସାହୁଙ୍କୁ ତା'ଙ୍କ ପଛରେ ଠିଆ ହୋଇଥିବା ଭଦ୍ରଲୋକ ହିନ୍ଦୀରେ ପଚାରୁଛନ୍ତି–କୁଆଡ଼େ ଯିବେ ? ଘନଶ୍ୟାମବାବୁ ଉତ୍ତର କରୁଛନ୍ତି–ଭୁବନେଶ୍ୱର । ଭଦ୍ରଲୋକ ପୁଣି କହୁଛନ୍ତି– ଆରେ ଭାଇ, ଭୁବନେଶ୍ୱର କୋଉଠି ? ଘନଶ୍ୟାମବାବୁ ଅପ୍ରସ୍ତୁତ ହୋଇ କହୁଛନ୍ତି, ଆଜ୍ଞା ଓଡ଼ିଶାରେ । ବ୍ୟବସାୟୀ ଭଦ୍ରବ୍ୟକ୍ତିଙ୍କର ଶେଷକଥା–ଓଡ଼ିଶାର ନାଁ ତ ମୁଁ ଶୁଣିନି ! ଉତ୍ତର ଭାରତର ସାଧାରଣ ଭାରତୀୟ ଅଧିବାସୀଟିଏ ଓଡ଼ିଶାର ନାଁଟି ମଧ୍ୟ ଶୁଣିନି ବୋଲି କହୁଚି । ଓଡ଼ିଶାର ନାଁ ଦୂର ଦୂରନ୍ତରରେ ଶୁଣାଯାଏ ନାହିଁ କାହିଁକି ? ଓଡ଼ିଆଙ୍କର ସ୍ୱର ସତରେ କ'ଣ ଲୁଧିଆନା ଯାଏଁ ଶୁଭେନି ?

କିଛି ମାସତଳେ ବମ୍ବେର ଏକ ଇନ୍‌ଷ୍ଟିଚ୍ୟୁଟ୍ ତରଫରୁ ସାଧାରଣଜ୍ଞାନ ପରୀକ୍ଷା କରଯାଇଥିଲା । ଅନେକ ଭିନ୍ନ ଭିନ୍ନ ପ୍ରକାରର ପ୍ରଶ୍ନସହ କେତୋଟି ପ୍ରଶ୍ନଥିଲା– କେଉଁ ସ୍ଥାନଟି କେଉଁ ରାଜ୍ୟରେ, ତାର ଉତ୍ତର କରିବା ପାଇଁ । ପ୍ରତ୍ୟେକ ସ୍ଥାନ ପାଇଁ ଚାରିଗୋଟି ସମ୍ଭାବ୍ୟ ରାଜ୍ୟର ତାଲିକା ମଧ୍ୟ ଦିଆଯାଇଥିଲା ଉତ୍ତର ଛକରେ । ପ୍ରଶ୍ନଭୁକ୍ତ ସ୍ଥାନମାନଙ୍କ ମଧ୍ୟସ୍ଥ ଓଡ଼ିଶାର ଥିଲା ଦୁଇଟି ସ୍ଥାନର ନାମ– ରାଉରକେଲା ଓ ପାରାଦୀପ । ମାତ୍ର ଆଶ୍ଚର୍ଯ୍ୟର କଥା, ୩୫୦୬ ଜଣ ପରୀକ୍ଷାର୍ଥୀଙ୍କ ଭିତରୁ କେବଳ ୫୪ ଜଣ ଜାଣିଥିଲେ ଯେ ଏ ଦୁଇଟି ସ୍ଥାନ ଓଡ଼ିଶା ରାଜ୍ୟରେ ଅବସ୍ଥିତ । ଓଡ଼ିଶା ବିଷୟରେ ଓଡ଼ିଶା ବାହାରେ ଆମ ଦେଶର ଅଧିକାଂଶ ସାଧାରଣ ଅଧିବାସୀ ଅଜ୍ଞ, ସେଥିପାଇଁ କ'ଣ ଆମେ ଓଡ଼ିଆଲୋକେ ମୋଟେ ଦାୟୀ ନୋହୁଁ ?

ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ଏକ କଲେଜ୍ । ସେଥିରେ ଓଡ଼ିଆ ଅନର୍ସ ନେଇ ପଢ଼ିବାର ସୁବିଧା ରହିଛି । ଅନର୍ସ ଶ୍ରେଣୀରେ ସ୍ଥାନ ସଂଖ୍ୟା ୧୬ । ଏଇ ବର୍ଷ ବିଭାଗୀୟ ମୁଖ୍ୟଙ୍କର ବହୁ ପ୍ରରୋଚନା ଓ ବ୍ୟକ୍ତିଗତ ଚେଷ୍ଟାଯୋଗୁଁ ଅନର୍ସରେ ଆଡ୍‌ମିଶନ ନେଲେ ମାତ୍ର ଦୁଇଜଣ । ଓଡ଼ିଆ ମୁଖ୍ୟଙ୍କର; କଲେଜ କମନ୍‌ରୁମରେ କରୁଣ ଭାଷଣ– ଆଉ କ'ଣ କେହି ଓଡ଼ିଆ ଅନର୍ସ ନେଇ ପଢ଼ିବେ ନାହିଁ ? ଚାରିଦିନ ପରେ ଦେଖାଗଲା ଅନର୍ସ ଶ୍ରେଣୀକୁ କେବଳ ଗୋଟିଏ ଛାତ୍ର ଆସୁଛି । ଅନ୍ୟ ଛାତ୍ରଟି କାହିଁ ? ହଠାତ୍ ଅନ୍ୟ ଛାତ୍ରଟି ବିଭାଗୀୟ ମୁଖ୍ୟଙ୍କ ଆଗରେ ପଡ଼ିଗଲା ଦିନେ । ପ୍ରାଧ୍ୟାପକ ପ୍ରଶ୍ନକଲେ; "କିହୋ, ଅନର୍ସ ଛାଡ଼ିଦେଲନା କ'ଣ ?" ଛାତ୍ରଟିର ଉତ୍ତର "ନାଇଁ ସାର୍, ଇଂରାଜୀ ଅନର୍ସ ନେଇଚି । ବାପା କହିଲେ, ଓଡ଼ିଆ ଅନର୍ସ ନେଇ ପଢ଼ିଲେ ଭବିଷ୍ୟତ ନାଇଁ । ମୁଁ ଆଉ କ'ଣ କରନ୍ତି ସାର !"

ଦେଶ ସ୍ୱାଧୀନ ହେବାପରେ ଅଠତିରିଶ ବର୍ଷ ବିତିଗଲାଣି । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେବାର ଅଣଚାଶ ବର୍ଷ ଅତୀତ ହେଲାଣି । ଦେଶୀୟ ରାଜ୍ୟ ମିଶ୍ରଣ ହୋଇ ଓଡ଼ିଶା ପୂର୍ଣ୍ଣାଙ୍ଗ ହେବାର ସତତିରିଶ ବର୍ଷ ଗଡ଼ି ଗଲାଣି; ଅଥଚ ଆଜି ଆମେ ଓଡ଼ିଆ ଭାଷାରେ କଥା କହିଲେ ଆମ କଣ୍ଠର ସ୍ୱର ସ୍ତିମିତ ମନେ ହେଉଛି, ମୁଁ ଓଡ଼ିଆ ବୋଲି ଅନ୍ୟ ଆଗରେ ପରିଚୟ ଦେଲେ, ମୁହଁଟି କୁଆଡେ ଉଭାନ୍ ହୋଇ ଯାଉଚି ଦେହରୁ !

କେତେ ମାତ୍ରାରେ ଓଡ଼ିଆ ଆମେ, କେତେ ଭାଗରେ ଭାରତୀୟ ?

୨୦ । ୩ । ୮୫

# ସାର୍, ପେପର୍ !

କୌଣସି ବ୍ୟାଙ୍କର ଗୁଡ଼ିଏ ଅଫିସର ପଦ ପାଇଁ ପରୀକ୍ଷା ଚାଲି-ଥିଲା । ସାଧାରଣଜ୍ଞାନ ପରୀକ୍ଷାର ପନ୍ଦର ମିନିଟ୍ ପରେ ଇଂରାଜୀରେ ରଚନା ଲେଖା ପରୀକ୍ଷା । ଏଥିପାଇଁ ସମୟସୂଚୀ ପଇଁଚାଳିଶ ମିନିଟ୍ । ଅଥଚ, ମାତ୍ର ଦଶ ମିନିଟ ସମୟ ଗତ ହେବା ପରେ ପଛ ଧାଡ଼ିରେ ବସି ପରୀକ୍ଷା ଦେଉଥିବା ଯୁବକ ଜଣେ ଠିଆ ହୋଇପଡ଼ି, ସମସ୍ତ ପରୀକ୍ଷାର୍ଥୀଙ୍କ ସମେତ ନିରୀକ୍ଷକଙ୍କର ଦୃଷ୍ଟି ଆକର୍ଷଣ କଲାଭଳି କହିଲେ—ସାର୍ ପେପର୍ !

ରଚନା ଲିଖନ ପାଇଁ ଯୋଗାଯାଇଥିବା ଚାରିପୃଷ୍ଠାର କାଗଜକୁ ସେ ଇତି ମଧ୍ୟରେ ନିଜସ୍ୱ ବୃହତ୍ ହସ୍ତଲିପିରେ କରିସାରିଥିଲେ ସମ୍ପୂର୍ଣ୍ଣ । ଅତଏବ ତାଙ୍କର ପୁଣି ଲୋଡ଼ା କାଗଜ । କିନ୍ତୁ ଦୁଃଖର ବିଷୟ, ଉତ୍ତର ଖାତାର ପ୍ରଚ୍ଛଦରେ ସୂଚନା ଥିଲା ଯେ, ପରୀକ୍ଷାର୍ଥୀଙ୍କୁ ସେହି ଚାରିପୃଷ୍ଠାର ସୀମିତ ଦୈର୍ଘ୍ୟ ଭିତରେ ହିଁ ରଚନା ଲେଖିବାକୁ ହେବ । ଫଳତଃ ଅଧିକ କାଗଜ ଯୋଗାଣର ବ୍ୟବସ୍ଥା ସେ କ୍ଷେତ୍ରରେ ଅସମ୍ଭବ ।

ଅଗତ୍ୟା ବେଗବାନ୍ ପରୀକ୍ଷାର୍ଥୀଟିକୁ, ସେଦିନ ମ୍ଲାନ ବଦନ ଧାରଣପୂର୍ବକ ପରୀକ୍ଷା ଗୃହରୁ ପ୍ରତ୍ୟାବର୍ତ୍ତନ କରିବାକୁ ପଡ଼ିଥିଲା ।

ଏଠାରେ ସ୍ୱୀକାର୍ଯ୍ୟ ଯେ, ଯୁବକ ବନ୍ଧୁ ଆମର ବିଶ୍ୱବିଦ୍ୟାଳୟ ପରୀକ୍ଷାଗୁଡ଼ିକରେ ପ୍ରଚଳିତ କାଗଜ ବହୁଳତାର ଅଭ୍ୟାସରେ ପଡ଼ିଯାଇଥିଲେ ନିଶ୍ଚେ ।

ରଚନାଶୈଳୀର ପରୀକ୍ଷାରେ ଗୋଟିଏ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଜଣେ ପରୀକ୍ଷାର୍ଥୀ ନିର୍ଦ୍ଦିଷ୍ଟ ସମୟ ଭିତରେ କେତେ ଶବ୍ଦ ବା

ଲେଖିପାରନ୍ତି, ସେକଥା ଅନୁମାନ କରିବା କିଛି ଅସମ୍ଭବ ନୁହେଁ । ତା'ଛଡ଼ା ଅକ୍ଷର ବୋଲି କହିଲେ, ପରୀକ୍ଷା ଖାତାରେ ତା'ର ଏକ ନିର୍ଦ୍ଦିଷ୍ଟ ଆକାର ରହିବା ଉଚିତ ବୋଲି ସମସ୍ତେ ସ୍ୱୀକାର କରିବେ । କିନ୍ତୁ 'ଆମର ତଥା-କଥିତ ଅଧିକାଂଶ ସ୍କୁଲ କଲେଜ ପରୀକ୍ଷାରେ ଦେଖାଯାଏ, କାଗଜ ଏବଂ ଅକ୍ଷର ପାଇଁ ଅସମ୍ଭବ ପ୍ରକାରର ବେଖାତିର ଭାବ ।

ଏ ସ୍ତମ୍ଭର ଲେଖକ ଆଶାକରେ, ଖବରକାଗଜ ପଢ଼ୁଥିବା ପ୍ରତ୍ୟେକ ପାଠକ କେବେ ନା କେବେ କୌଣସି ପରୀକ୍ଷା ଦେଇ ଅତୀତରେ ପରୀକ୍ଷା ଖାତା ସମ୍ପର୍କିତ କିଛି ନା କିଛି ଅଭିଜ୍ଞତା ହାସଲ କରିଥିବେ । ପରୀକ୍ଷା ଖାତାରେ ଛାତ୍ରମାନେ ଯେଉଁ ଆଗ୍ରହରେ କାଗଜ ଯୋଡ଼ନ୍ତି, ସତରେ କ'ଣ ତାହା ତାଙ୍କର ଆବଶ୍ୟକତା ଦୃଷ୍ଟିରୁ ଦରକାର ପଡ଼େ ?

ପାରମ୍ପରିକ ପରୀକ୍ଷାରେ ଖାତାଗୁଡ଼ିକ ବଣ୍ଟାଗଲା ପରେ ଅଧିକାଂଶ ପରୀକ୍ଷାର୍ଥୀ ଖାତାର ଉପର ପଟରୁ ଚାରି ଇଞ୍ଚ, ଏକଡ଼ରୁ ଦେଢ଼ଇଞ୍ଚ ଓ ସେକଡ଼ରୁ ଦେଢ଼ଇଞ୍ଚ ମୋଡ଼ ଦେଇ ଲେଖିବା ନିମିତ୍ତ ଘର ସଜାଡ଼ି ବସନ୍ତି । ତା'ପରେ ଆରମ୍ଭ ହୁଏ ଲେଖା । ବରକୋଳି ପରି ଟେକା ଟେକା ଅକ୍ଷରରେ ଭରିଯାଏ ପୃଷ୍ଠା । ମାତ୍ର ଚାଳିଶଟି ଅକ୍ଷରରେ ପୃଷ୍ଠା ଶେଷ । ପ୍ରଥମ ପ୍ରଶ୍ନଟି ସରିବା ପାଇଁ ପରୀକ୍ଷାର୍ଥୀ ସମ୍ପୂର୍ଣ୍ଣ ଅଠର ପୃଷ୍ଠାର ପାଖଟିକୁ ସାରିଦେଇ ରଡ଼ି ଛାଡ଼ନ୍ତି– ସାର୍, ପେପର୍ !

ପେପର୍ ଯେମିତି ବେହିସାବୀ ଲୋକଙ୍କର କଲୋନୀରେ ଲଗା ଏକ ମ୍ୟୁନିସିପାଲିଟି ଟ୍ୟାପ୍ । ତା'କୁ ସେଇଭଳି ବିନା ଦରକାରରେ ବୁହାଇ ଦିଆଯାଇପାରେ । ତା'ପ୍ରତି ବେଖାତିର କରଯାଇପାରେ । ତା' ଉପରେ କଟକଣା କାହିଁକି ? ଯାଃ, କାଗଜ କେତେ ପୃଷ୍ଠାତ !

ପାଠକେ ଅବଧାନ କରନ୍ତୁ, ନିମ୍ନ ପ୍ରାଥମିକ ସ୍କୁଲମାନଙ୍କଠାରୁ ଆରମ୍ଭକରି ମାଧ୍ୟମିକ, ହାଇସ୍କୁଲ, କଲେଜ ଓ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଆମର ସବୁ ସ୍ତରରେ ଏଇ ମୁହାଣ–ମେଲା କାଗଜର ବ୍ୟବହାର । ତିନି ଘଣ୍ଟାର ପରୀକ୍ଷା । ମେସିନ୍ ଭଳି ଲେଖିଲେ ମଧ୍ୟ ତିନି ଘଣ୍ଟାରେ ମଣିଷ ହାତ ସାଧାରଣ ଆକାରର ଅକ୍ଷରରେ ଚାଳିଶ ପୃଷ୍ଠା ଲେଖିବ, ଅଥଚ ପରୀକ୍ଷାର୍ଥୀଟିଏ ଖାତାର ଅଧିକାଂଶ ଭାଗକୁ ମାର୍ଜିନରେ ଉଡ଼ାଇ ଦେଇ, ଏଡ଼େ ଏଡ଼େ ଅକ୍ଷରରେ ଷାଠିଏ ପୃଷ୍ଠା ଲେଖି ଛାତି ଫୁଲଉଛି–ମୁଁ ଦଶଖଣ୍ଡ ଅଧିକା କାଗଜ ଯୋଡ଼ିଚି । ପୁଣି ଲେଖିବି । ଅତଏବ ସାର୍, ପେପର୍ !

ଏତେ ଅଧିକ କାଗଜ ଯୋଡ଼ିବା କ'ଣ ସତରେ ପ୍ରୟୋଜନ ? ସବୁ ପରୀକ୍ଷାରେ ସେଇ ବ୍ୟାଙ୍କ ପରୀକ୍ଷା ଭଳି ପ୍ରତ୍ୟେକ ପୃଷ୍ଠାକୁ ପାଞ୍ଚ

ପୃଷ୍ଠା ଲେଖାଏଁ ଦେଇ ଖାତାଟିକୁ ପଚିଶ ପୃଷ୍ଠାରେ ସୀମିତ କରଗଲେ କ୍ଷତି କ'ଣ? ଖାତାକୁ ହାତରେ ଓଜନ କରି ନମ୍ବର ଦେଉଥିବା ପରୀକ୍ଷକ ହୁଏତ ଅଧିକା କାଗଜଯୋଡ଼ା ଖାତା ଲେଡ଼ିବ, ହେଲେ ଅଳିଆ ଗଦାପରି ବିଡ଼ା ବିଡ଼ା କାଗଜରେ ଗୁନ୍ଥା ଏକ ପରୀକ୍ଷା ଖାତା, ପ୍ରକୃତରେ କ'ଣ କୌଣସି ପରୀକ୍ଷକ ପସନ୍ଦ କରେ ।

ନିକଟରେ ଏକ ହିସାବରୁ ଜଣାପଡ଼ିଚି ଆମର ହାଇସ୍କୁଲ ଏବଂ କଲେଜମାନଙ୍କରେ ବ୍ୟବହୃତ ପରୀକ୍ଷା ଖାତାରେ ଶତକଡ଼ା ପଚାଶ ଭଗରୁ ଷାଠିଏ ଭଗ ପର୍ଯ୍ୟନ୍ତ ଅଯଥା କାଗଜ ବ୍ୟବହୃତ ହୁଏ । ଶତକଡ଼ା ଚାଳିଶରୁ ପଚାଶ ଭଗ ପିଲା, ଖାତାରେ କେତେ ମାର୍ଜିନ୍ ଦେବା ଉଚିତ୍ ତାହା ଜାଣନ୍ତି ନାହିଁ ଏବଂ ଶତକଡ଼ା ଷାଠିଏରୁ ସତୁରୀ ଭଗ ପିଲା, ପରୀକ୍ଷା ଖାତାରେ ଅଧିକା କାଗଜ ଯୋଡ଼ିବାର ମନସ୍ତତ୍ତ୍ୱ ଯୋଗୁ ବଡ଼ ବଡ଼ ଅକ୍ଷରରେ ଲେଖିବାକୁ ଆଗ୍ରହୀ ହୋଇଥାଆନ୍ତି ।

କାଗଜ, ଶିକ୍ଷାର ଜୀବନୋପମ ଅଙ୍ଗ । ଦିନକୁ ଦିନ କାଗଜ ମହାର୍ଘ ହେବାକୁ ଯାଉଛି । ସର୍ବୋପରି, କାଗଜପ୍ରତି ଅସମ୍ମାନ ଭବ ପରୀକ୍ଷାର୍ଥୀଙ୍କ ମନରେ ଶିକ୍ଷାପ୍ରତି ଦୃଢ଼ତା କୋହଳ କରେ । ତେଣୁ ପ୍ରତ୍ୟେକ ପରୀକ୍ଷା ଖାତାରେ ପ୍ରଶ୍ନଗୁଡ଼ିକ ପାଇଁ ଉତ୍ତରରେ ନିର୍ଦ୍ଦିଷ୍ଟ ପୃଷ୍ଠା ବ୍ୟବସ୍ଥା ରଖିବା ହୁଏତ ଅଧିକ ସଫଳତା ଆଣିବ ।

ନଚେତ୍ ସାଙ୍ଗମାନଙ୍କର ବା ଉପସ୍ଥିତ ପରୀକ୍ଷାର୍ଥୀଙ୍କର ଦୃଷ୍ଟି ଆକର୍ଷଣ କରି ବାହାବା ନେବା ପାଇଁ ଜଣେ ଜଣେ ଚିତ୍କାର କରୁଥିବେ—ସାର୍, ପେପର୍ ! ମାନେ ମୁଁ ଏମିତି ଲେଖିପାରେ । ହେଲେ ଫଳ ?

ମନେରଖିବାକୁ ହେବ, ପରୀକ୍ଷା ଖାତାରେ ବଡ଼ ବଡ଼ ଅକ୍ଷର ଲେଖି ମୋଟା ମୋଟା ମାର୍ଜିନ ଛାଡ଼ି, ଅଧିକା କାଗଜ ଯୋଡ଼ୁଥିବା ପରୀକ୍ଷାର୍ଥୀଙ୍କ ଭିତରୁ ଶତକଡ଼ା ପଞ୍ଚାବନ ଅକୃତ-କାର୍ଯ୍ୟ ।

(୨୭-୩-୮୫)

# ମୁହଁ ସାମ୍ନାରେ କାନ୍ଥ

ଗାଁ ଗହଳରେ ଖରଦିନେ ରାମଲୀଳା ପାଳିତ ହୁଏ । ରାତି ରାତି ଧରି ତାମସା ଚାଲେ । ପଶୁରାମ ଭେଟ, ସୂର୍ପଣଖା ସାକ୍ଷାତ, ସୀତାଚୋରୀ, ଲଙ୍କାପୋଡ଼ି ଏବଂ ରାବଣ ବଧ ଆଦି ଅନେକ ରୋମହର୍ଷଣକାରୀ ଅଭିନୟ ମଞ୍ଚସ୍ଥ ହୁଏ ବର୍ଷ ବର୍ଷ ଧରି । ପିଲାମାନେ ରାମଲୀଳା ସରିଯାଇଥିଲେ ମଧ୍ୟ ପରେ ଅଭିନୟ କରି ବସନ୍ତି ବିଭିନ୍ନ ଦୃଶ୍ୟକୁ । ସଭିଙ୍କର ଇଚ୍ଛା ହନୁମାନ ହେବାପାଇଁ । ମୁହଁରେ ଧାନଉଁଷା ହାଣ୍ଡିର କଳା । ପେଣ୍ଟ ଉପରେ ଗାମୁଛାର ଫାଳିକଛା । ପଛରେ ଦଉଡ଼ିପରି ବନ୍ଧାଯାଇଥିବା ଖଣ୍ଡେ କନାର ଲାଙ୍ଗୁଡ଼ । ସମସ୍ତେ ଯେପରି ଲଙ୍କାପୋଡ଼ି କରିବାକୁ ତତ୍ପର । ଇଚ୍ଛାହୁଏ ହାତବାଜିବା ମାତ୍ରେ ଗଛଗୁଡ଼ାକ ଉପୁଡ଼ି ଆସନ୍ତାକି, ପାଦ ଉଠାଇବା ମାତ୍ରେ ଆକାଶକୁ ଉଠିଯାଆନ୍ତାକି ?

ହନୁମାନ ଯେମିତି ପ୍ରତ୍ୟେକ ପିଲାର ଆଦର୍ଶ । ଆଜି ସହରାଞ୍ଚଳରେ ସେମିତି ଚାରି ପାଞ୍ଚବର୍ଷିଆ ପିଲାଟିଏ ବ୍ୟାଟ୍ ଧରିଲେ କହୁଚି, ମୁଁ ଗାଭସ୍କର, ବଲ୍ ଧରିଲେ କହୁଚି ମୁଁ କପିଳଦେବ, ଅଭିନୟ ନାଚ ଆରମ୍ଭ କଲେ କହୁଚି ମୁଁ ଅମିତାଭ ବଚ୍ଚନ । ସହରୀ ପିଲାଙ୍କ ପାଇଁ, ଏମାନେ ଯେ ଶିଶୁ ଆଦର୍ଶ ହେବା ପାଇଁ ସିନେମା, ଖବରକାଗଜ ଓ ଟି.ଭି ମାଧ୍ୟମରେ ଆସି ପହଞ୍ଚି-ଯାଇଛନ୍ତି, ସେ କଥା ସତ କିନ୍ତୁ ଏମାନେ ନ ଥିଲେ ମଧ୍ୟ ଗାଁ ପିଲାଏ ହନୁମାନଙ୍କୁ ଆଦର୍ଶ କରିବା ପରି ଶିଶୁ ବା ବାଳକମାନେ ସହରରେ ଆଦର୍ଶ କରିବେ ନିଶ୍ଚିତେ କୌଣସି ନା କୌଣସି ଆଲୋଡ଼ନକାରୀ ଉପଲକ୍ଷକୁ ।

ଜୀବନର ପ୍ରାକ୍ କାଳରେ ବ୍ୟକ୍ତିତ୍ୱ ଦାନା ବାନ୍ଧୁଥିବା ବେଳେ ପ୍ରତ୍ୟେକ ମଣିଷଶିଶୁ ଅନୁକରଣର ଅଭିନୟ କରେ । ଏ ଅନୁକରଣରେ ଥାଏ ରୋମାଞ୍ଚ ତଥା ବିସ୍ମୟର ଆଲୋଡ଼ନ କିନ୍ତୁ କିଶୋର ଅବସ୍ଥାରେ ପ୍ରତ୍ୟେକ

ମଣିଷ ଖୋଜେ ଗୋଟିଏ ଆଦର୍ଶ । ଯେଉଁ ଆଦର୍ଶର ଛାଞ୍ଚରେ ସେ ନିଜକୁ ସଜାଡ଼େ, ନିଜକୁ ସଫଳ ମନେକରେ ଏବଂ ଯେଉଁ ଆଦର୍ଶ ସାରା ଜୀବନ ପାଇଁ ତା'ଭିତରେ ଗଣ୍ଠି ପଡ଼ିରହେ । ଏଭଳି ଆଦର୍ଶ କେଉଁ କ୍ଷେତ୍ରରେ ବିକଶିତ ହୁଏତ,କେଉଁ କ୍ଷେତ୍ରରେ ଅସମ୍ପୂର୍ଣ୍ଣ ଭାବେ ରହିଯାଏ ଭିନ୍ନ ଭିନ୍ନ ଆଦର୍ଶର ଅଙ୍କୁରିତ ଟୁକୁର ହୋଇ ।

କୁହାଯାଏ, ଜନ୍ମଠାରୁ ଯୌବନ ପର୍ଯ୍ୟନ୍ତ ଶିଖିବାର ବେଳ, ଯୌବନଠାରୁ ପ୍ରୌଢ଼ତ୍ୱ ପର୍ଯ୍ୟନ୍ତ ଖଟିବାର ବେଳ ଏବଂ ପ୍ରୌଢ଼ତ୍ୱଠାରୁ ବାର୍ଦ୍ଧକ୍ୟ ବା ମୃତ୍ୟୁ ପର୍ଯ୍ୟନ୍ତ କେବଳ ପାଳିବାର ସମୟ । ଏହାକୁ ବ୍ୟତିକ୍ରମ ବୋଲି କହି କେହି କେହି ଯେ ଆଙ୍ଗୁଠି ଉଠେଇ ନାହାନ୍ତି ସେପରି ନୁହେଁ, କିନ୍ତୁ ମନେରଖିବାକୁ ହେବ ସେମାନେ ବ୍ୟତିକ୍ରମ ହିଁ କେବଳ ।

ହେତୁ ପାଇବା ପରେ ସେଥିପାଇଁ ମଣିଷଟି ଆଦର୍ଶଟିଏ ଖୋଜେ । ଅନୁକରଣ କରିବାକୁ ଆରମ୍ଭକରେ ତାକୁ ଏବଂ ଆହରଣର ଗଭୀରତା ଅନୁପାତରେ ଆଦର୍ଶଟି ତା' ଭିତରେ ସରବାନ୍ଧି ଆସେ । ଯେଉଁ କ୍ଷେତ୍ରରେ ଏ ସର ସଫଳ ଭାବରେ ବାନ୍ଧି ହୋଇପାରିଛି, ସେ କ୍ଷେତ୍ରରେ ଆଦର୍ଶଟି ମଧ୍ୟ ସଫଳ ଭାବରେ ପ୍ରତିଫଳିତ ହୋଇଛି ପରବର୍ତ୍ତୀ କାଳରେ । ମୋହନ ଦାସ ଗାନ୍ଧି, ଗାନ୍ଧିଜୀ ହୋଇଥିଲେ ପ୍ରୌଢ ଅବସ୍ଥାରେ; କିନ୍ତୁ ହରିଶ୍ଚନ୍ଦ୍ର ଏବଂ ଶ୍ରବଣକୁମାରର ଆଦର୍ଶ କିଶୋର କାଳରୁ ଦାନା ବାନ୍ଧିଥିଲା ତାଙ୍କ ଭିତରେ । ଭାରତରେ ସ୍ୱାଧୀନତା ସଂଗ୍ରାମ କାଳରେ ସେଇ ଗାନ୍ଧିଜୀ ହୋଇଥିଲେ କୋଟି କୋଟି କିଶୋର ଏବଂ ଯୁବକଙ୍କର ଆଦର୍ଶ । ସ୍କୁଲ, କଲେଜ, ପ୍ରତିଷ୍ଠାର ସ୍ୱପ୍ନ ସବୁଛାଡ଼ି ସେଇ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ ଭାରତର ଯୁବ ସ୍ରୋତ । ସଭିଙ୍କର ଇଚ୍ଛା, ଯେମନ୍ତ ଗାନ୍ଧିଜୀ ହେବେ । ବ୍ରିଟିଶ୍ ସରକାରକୁ ଦେଖେଇ ଦେବେ– ଏଇ ଗୋଟିଏ ଗାନ୍ଧି ନୁହେଁ, ଆମେ ସମସ୍ତେ ଗାନ୍ଧି, ଆମ ତୁଣ୍ଡରେ ସେଇ ଅହିଂସାର ମନ୍ତ୍ର ।

ହେଲେ ଆଜି ! ସେଦିନର ଗାନ୍ଧି ପ୍ରଭାବ ଆଜି ଆଉ ନାହିଁ । ଭାରତର ସାମାଜିକ ଦୃଶ୍ୟପଟ ବଦଳି ବଦଳି ଆସୁଚି । ଅହିଂସାର ମହାମନ୍ତ୍ର ଅସ୍ପଷ୍ଟ ହେଉଚି ଦିନୁଦିନ । ଆମ ଯୁବକମାନଙ୍କର କିଏ ସେ ଆଦର୍ଶ ବର୍ତ୍ତମାନ ? କିଏ ସେ ଆଲୋଡ଼ିତ କରୁଛି, ଆଜିକାଲିର ଯୁବକ ମନକୁ ? କାହାକୁ ନେଇ ସେ ସଫଳ ମଣିଷ ହେବ ? ଭାରତୀୟ ଯୁବକ ଆଗରେ କେଉଁ ଦିଗନ୍ତ ଆଜି ଉନ୍ମୋଚିତ ?

ସଫଳ ସମାଜ ପାଇଁ ସଫଳ ଆଦର୍ଶ ଯେ ଜରୁରୀ ସେ ବିଷୟରେ କୌଣସି ସନ୍ଦେହ ରହିବା ଅନାବଶ୍ୟକ । ସାରା ମାନବ ଜାତିର ଉଦ୍ଧାର ପାଇଁ ଜଣେ ବୁଦ୍ଧ, ଜଣେ ଯୀଶୁ ବା ଜଣେ ଗାନ୍ଧି ଆବିର୍ଭୂତ ହେଲେ,

ଭରିଯାଏ ସମସାମୟିକ କାଳର ଜଗଲ ସମୟ । ଜୀବନ ପାଇଁ ଆଦର୍ଶ ଅନୁକରଣଟିଏ ଲୋଡ଼ା; ସମାଜ ପାଇଁ ଜଣେ ଆଦର୍ଶ ପୁରୁଷ ଲୋଡ଼ା । ଦିଗ୍‌ଦର୍ଶନ ପାଇଁ ଲୋଡା ମହାପୁରୁଷ । ଜନଜୀବନକୁ ଉଦ୍‌ବୁଦ୍ଧ କରିବା ପାଇଁ ଆବଶ୍ୟକ ଏକ ଆଦର୍ଶ— ସତ୍ୟ,ନିଷ୍ଠା, ସେବା ଓ ପ୍ରେମର ଆଦର୍ଶ ।

କାହିଁ ସେ ଆଦର୍ଶ ? କିଏ ସେ ହେବ ଆମର ଆଦର୍ଶ ?

ଆମ ଆଗରେ ଆଜି ଖର୍ବ ପୁରୁଷମାନଙ୍କର ବାଟ କଢ଼େଇ ନେଉଥିବା ଏକଡ଼ ସେକଡ଼ ପାଦ । ଆମ ଗଳଗସ୍ତାର କଡ଼ରେ ସଦ୍ୟକଟା ପ୍ରାଣୀ-ମାନଙ୍କର ବିପଣୀ । ଆମ କୋଠାବାଡ଼ି ସବୁ ଉଚ୍ଛୋଚର ଇଟାରେ ତିଆରି ଇମାରତ୍ । ଆମ ଦପ୍ତର ଏବଂ କାରଖାନାମାନଙ୍କରେ କାମ ନକରିବାର ଭିଡ଼ । ଆମ ପ୍ରେସ୍ ଏବଂ ଖବରକାଗଜ ପୃଷ୍ଠାର ନାୟକମାନେ ଧର୍ଷଣକାରୀ ଅଥବା ତଣ୍ଡିକଟା ସ୍ମଗ୍‌ଲର । ଅଚିରେ ଆମେ କାଇମ ବଢ଼େଇ ଦେଉ ଅପୋଗଣ୍ଡର ହାତକୁ । କିଏ ସେ ଆମର ଆଦର୍ଶ ?

ଅଫିସରୁ ବାପା କ୍ଲିପ୍ ଏବଂ ପେପର୍ ଓ୍ୱେଟ୍‌ବି ନେଇ ଆସନ୍ତି । ମାଉସୀଘର ଗାଁକୁ ଆମ ସମସ୍ତଙ୍କୁ ଜିପ୍‌ରେ ନେବା ପାଇଁ, ଇନ୍‌ସ୍ପେକ୍‌ସନ୍‌ର ମିଛ ଟୁର୍ ପକେଇ ଦିଅନ୍ତି ବାପା । ଦରମା ପଇସାରେ କ'ଣ ଚଳିହୁଏ କହି ବାପା ସହରରେ ଦୁଇଟି କୋଠା କରିଛନ୍ତି । ବଡ଼ ମଉସା ଚାକିରୀରୁ ସସ୍‌ପେଣ୍ଡ ହେଲାପରେ ଏବେ ଭଲ ରାଜନୀତି କରୁଚନ୍ତି । ତା'ଙ୍କ ଦୁଆରେ ଏବେ ସବୁବେଳେ ଗାଡ଼ି । ଗାଁରେ ଚିନି, କିରାସିନି ମିଳୁନି; କିନ୍ତୁ କାକା ଆମର ଡିଲର୍‌ସିପ୍ ନେଇ ତିନିଟା ଟ୍ରକ କିଣିଲେଣି ।

ଘନ ଅଙ୍କଲ୍‌ଙ୍କର କାରଖାନା କରିବାପାଇଁ ପାଞ୍ଚଲକ୍ଷ ଟଙ୍କା ଲୋନ୍ ପାଇ-ଛନ୍ତି, କାରଖାନା ହେଇନି, ତା'ଙ୍କ ବଡ଼ପୁଅ ଏବେ ଖାଲି ବଡ଼ ହୋଟେଲରେ ରହୁଚି । ଆମ ପ୍ରିନ୍‌ସପାଲଙ୍କର ସାନପୁଅ ଗତଥର ବି.ଏ. ଫେଲ୍ ହେଇ, ଏଥରକ ସିଏ, ଏକୁଟିଆ ଗୋଟେ ରୁମ୍‌ରେ ବସି ଅଲଗା ପରୀକ୍ଷା ଦଉଚି । ଚୁନି ମାଉସୀ ଆମର ବାହା ହେଲବେଳେ ମଉସା ତୃତୀୟ ଶ୍ରେଣୀ ସପ୍ଲାଇ ଚାକିରିଆ ବୋଲି ମନ ଖରାପ କରୁଥିଲେ, ଅଥଚ ଆମ ସମସ୍ତଙ୍କ ଭିତରେ ସିଏ ଏଇଲେ ସବୁଠାରୁ ବଡ଼ ଧନୀ । ତା'ଙ୍କର ଘରେ ଭିଡ଼ିଓ ଅଛି ।

କିଏ ଆମର ଆଦର୍ଶ ? ବାପା, ବଡ଼ ମଉସା, କାକା, ଘନ ଅଙ୍କଲ୍ ପ୍ରିନ୍‌ସପାଲ୍ ନା ଚୁନି ମାଉସୀ ଘର ମଉସା ?

ଗାଁ ଗହଳରୁ ଏବେ ରାମଲୀଳା ଉଠିଗଲାଣି । ଯାତ୍ରା ପାର୍ଟିମାନେ ଘମାଘୋଟ "ବିଲା, ରଙ୍ଗା" ଓ "ଫୁଲନ୍ ଦେବୀ" ନାଟ କରାଉଚନ୍ତି । କାହାକୁ ଆମ ପିଲାମାନେ ଅନୁକରଣ କରିବେ ? ହନୁମାନକୁ ନାଁ ବିଲା-ରାଙ୍ଗାକୁ ?

(୩–୪–୮୫)

## ଫଟା ଦର୍ପଣରେ ମୁହଁ

ତା'ପରେ କିଛି ସମୟ ନୀରବ ରହି ସେ ଆରମ୍ଭ କଲେ:—

"ପ୍ରତ୍ୟେକ ବିକାଶଶୀଳ ଦେଶମାନଙ୍କରେ ଶିକ୍ଷା ଏବଂ ନ୍ୟାୟ ଏ ଦୁଇଟି ବିଭାଗ ଅବହେଳିତ । ଲୋକଙ୍କଠାରୁ ଆରମ୍ଭ କରି ଶାସକଙ୍କ ପର୍ଯ୍ୟନ୍ତ ମନେକରନ୍ତି, ଶିକ୍ଷା ଏବଂ ନ୍ୟାୟ ଯେମିତି ଦେଶର ବିକାଶ ପାଇଁ ମୋଟେ ଅପରିହାର୍ଯ୍ୟ ନୁହେଁ । କାରଣ ଶିକ୍ଷିତ ବିଶେଷଜ୍ଞ ବ୍ୟକ୍ତିମାନଙ୍କୁ ବିଦେଶରୁ ଆମଦାନୀ କରଯାଇ ପାରିବ ଏବଂ ନ୍ୟାୟ ସମ୍ପର୍କରେ ଏତିକି କୁହାଯାଇ ପାରେ—ସାଧାରଣ ମଣିଷ ନ୍ୟାୟ ପାଇବା, ବୈଦିକ କାଳରୁ ସୁଦ୍ଧା କେବେ ଥିଲା ଯେ, ସେଥିପାଇଁ ଏତେ ଭାବନା ବର୍ତ୍ତମାନ ।

ଭାରତରେ ଉଭୟ ଶିକ୍ଷା ଏବଂ ନ୍ୟାୟ ବିଭାଗ ଦୁଇଟି ଦୁର୍ବଳ । କାରଣ ସମ୍ପର୍କରେ ଅନୁଧ୍ୟାନ କଲେ ଜଣାପଡ଼େ—ଜଣେ ମେଧାବୀ ଛାତ୍ରଙ୍କ ପାଇଁ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ନିଯୁକ୍ତି ଯେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ, ତା'ଠାରୁ ବଳି ଗୁରୁତ୍ୱପୂର୍ଣ୍ଣ ବ୍ୟାଙ୍କରେ ଗୋଟିଏ ଅଫିସର ଚାକିରି । ଯୁକ୍ତି : ଅଧ୍ୟାପନାରେ ଭବିଷ୍ୟତ ନାହିଁ । ଅଧ୍ୟାପକ ହେଲେ କୌଣସି ଅଫିସରିଆ ସୁବିଧା ସୁଯୋଗ ମିଳେନା । ନ୍ୟାୟ ବିଭାଗରେ ସେଭଳି : ଯାହାର ନାହିଁ ଅନ୍ୟଗତି, ସିଏ ପଢ଼ୁଛି ଓକିଲାତି, ସେଇଥିରୁ ହେବେ ବିଚାରପତି ।

ଏଭଳି ଉଦାହଣରେ ଯେ, ବ୍ୟତିକ୍ରମ ନାହିଁ ସେକଥା ନହେଁ; ମାତ୍ର ଏଇ ହେଲା ସାଧାରଣ ପରିସ୍ଥିତି ।

ଯେଉଁ ଦେଶରେ ଦ୍ରୋଣ ବା ପ୍ଲାଟୋଟିଏ ଗମାସ୍ତା ହୁଏ ଏବଂ ଭ୍ରଷ୍ଟାଚାରୀ ନୀତିହୀନ ଲୋକଗୁଡ଼ିଏ ବିଚାରପତି ସାଜନ୍ତି, ସେ ଦେଶରେ

ଅନ୍ଧମାନେହିଁ କେବଳ ଦର୍ପଣରେ କାରବାର କରିପାରିବେ । ଅଳ୍ପବିଦ୍ୟାଧାରୀ ଗୁଡ଼ିଏ ଗୁରୁ ବା ଶିକ୍ଷକ ସାଜି ସମାଜକୁ ଯେଉଁ ଦିଗ୍‌ଦର୍ଶନ ଦେବେ ତାହା ମଧ୍ୟ ବିପର୍ଯ୍ୟ ।

ଆଜି ସାରା ଦେଶରେ ଶିକ୍ଷାର ମାନ, ଶିକ୍ଷାପ୍ରତି ମମତା ଶିକ୍ଷକର କର୍ତ୍ତବ୍ୟବୋଧ ଓ ସର୍ବୋପରି ମେଧାବୀ ମଣିଷମାନଙ୍କର ଶିକ୍ଷକ ସାଜିବାରେ ଅନିଚ୍ଛା ଏତେ ବୃଦ୍ଧି ପାଇଛି ଯେ, ଦେଶର ଭବିଷ୍ୟତ ଶୁଭଙ୍କର ନୁହେଁ ବୋଲି ଯେ କେହି ଅନୁମାନ କରିବ ।

ଏତକ କଥା କୁଳମଣି ବାବୁ ମୋ ଆଗରେ ପ୍ରକାଶ କରିଥିଲେ କିଛିଦିନ ତଳେ । ନିଜ ଅନୁଜବର ସାଦୃଶ୍ୟ ତାଙ୍କଠାରେ ପାଇ ମୁଁ ତାଙ୍କ ଆଖିକୁ ସହୃଦୟତାରେ ଚାହିଁ ସେଦିନ ନତ ନତ ହୋଇପଡ଼ିଥିଲି । ଭାବିଲି, ଏଇ ଚେତନା ଆମର ଚୁଲିଁ ଶାସକମାନେ ଚେତନ୍ତେ ହେଲେ !

ଭଲ ଛାତ୍ରଛାତ୍ରୀମାନେ ଶିକ୍ଷାଗତ ସଫଳତା ଲାଭ ଉପରେ ଶିକ୍ଷକ ସାଜିବାକୁ ରାଜି ନ ଥାନ୍ତି, ଏକଥା ସତ; କାରଣ ବର୍ତ୍ତମାନ ସମାଜରେ ଶିକ୍ଷକର ମର୍ଯ୍ୟାଦା ଏବଂ ଅର୍ଥଗତ ସ୍ଥିତିର ବୈକଲ୍ୟ, ସେମାନଙ୍କ ଆଗରେ ମୋଟେ ଆକର୍ଷଣ ନୁହେଁ । ଶିକ୍ଷକମାତ୍ରେହିଁ ଦୁଃସ୍ଥ ହେବା ଉଚିତ, ଏଇ କଥାଟିକୁ ସମାଜ ସାମାଜିକଭାବେ ବୋଧେ ଗ୍ରହଣ କରି ନେଇଛି । ଅତଏବ ଯଦି ଅନ୍ୟପନ୍ଥା ଅଛି ତେବେ କିଏ କାହିଁକି ଶିକ୍ଷକ ସାଜିବ ଏବଂ ଦୁଃସ୍ଥ ଦୁଃସ୍ଥ ବୋଲି ବାରମ୍ବାର ଉଚ୍ଚାରଣକରି ଜୀବନସାରା କେବଳ ଅଭିଯୋଗ କରୁଥିବ ? ନୂଆ କଲେଜର ଅଧ୍ୟାପକ ଚାକିରି, ମାସକୁ ଦରମା ଦୁଇଶହ ପଚାଶ । ପିଲାଏ ଆମର ଶିକ୍ଷିତ ହେବେ । ସେକ୍ରେଟେରୀ କଲେଜ କରି ଦଶ ଜଣ ଅଧ୍ୟାପକଙ୍କୁ ନିଯୁକ୍ତି ଦେଇଛନ୍ତି ବୋଲି କହି ନିଶ ମୋଡ଼ୁଛନ୍ତି । ମାତ୍ର ସେ ଅଧ୍ୟାପକମାନଙ୍କୁ ଦେଖ, ମୁହଁରେ ସେମାନଙ୍କର ଭେକର ଅଢ଼ୁଆ ଦାଢ଼ୀ । ଏମ୍.ଏ. ପରେ କୋଉ କୂଳକୁ ହେଲେନି ବୋଲି ବିଚରାମାନେ ଅଧ୍ୟାପକ । ଶିକ୍ଷାଦେବେ ସେ କାହାକୁ ? କିନ୍ତୁ ଶିକ୍ଷାଦେଇପାରିବା ଲୋକ ଯାଇ କମ୍ପାନୀ ସାମ୍ପୁଲ ବିକୁଛି ଖରାରେ ଟାଇ ଭିଡ଼ି । ତାର ବହୁତ ଦରମା । ଶିକ୍ଷକ ହବ କିଏ ?

ଏପଟେ ବ୍ୟାଙ୍କରେ କିରାଣୀ ଚାକିରି, ସେପଟେ ହାଇସ୍କୁଲରେ ମାଷ୍ଟରଗିରି । ମେଧାବୀ ମଣିଷଟି କୁଆଡ଼କୁ ଯିବ ?

କୁଳମଣି ବାବୁଙ୍କ ସହିତ ଦେଖାହେବାର କିଛିଦିନ ପରେ ତାଙ୍କ ପୁଅ କିରଣ ଆସି ମୋ ଘରେ ପହଞ୍ଚି ଭଲ ଖବରଟିଏ ଦେଲା । ଏମ୍.ଏ. ପରୀକ୍ଷାରେ ସେ ଫାଷ୍ଟକ୍ଲାସ୍ ଫାଷ୍ଟ ହୋଇଛି । ଖୁସିରେ କୁଣ୍ଢେଇ ପକେଇଲି ମୁଁ ତା'କୁ । କିରଣ, ସୁନ୍ଦର ଲେଖେ ଯେମିତି, ଆଚମ୍ବିତ ଭାଷଣ ମଧ୍ୟ ଦିଏ

ସେମିତି । ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ଇଂରାଜୀରେ ଫାଷ୍ଟ । ଖୁସି ଲାଗିଲା ମତେ ।

ଏ ଖବରର ପ୍ରାୟ ଦେଢ଼ମାସ ପରେ ଦିନେ କୁଳମଣି ବାବୁଙ୍କ ଘରେ ପହଞ୍ଚୁ ପହଞ୍ଚୁ ଶୁଣିଲି ତା'ଙ୍କର ବଡ଼ପାଟି । କାହାକୁ ଯେପରି ଖୁବ୍ ବିରକ୍ତ ହୋଇ ଗାଳି କରୁଛନ୍ତି । ଭିତରକୁ ପଶୁଥିବାବେଳେ, ମୋ ଉପରେ ନଜର ପଡ଼ିଗଲା ବୋଧେ, ରଡ଼ିଛାଡ଼ିଲେ—ଆସ ଲୋକନାଥ ଆମ ଗୁଣବନ୍ତ ବାବୁଙ୍କ ବୁଦ୍ଧିର ଟିକେ ତାରିଫ କରିଦେଇଯାଅ । ବାବୁ ରିଜର୍ଭ ବ୍ୟାଙ୍କ୍ ଗ୍ରେଡ୍ 'ବି' ଚାକିରି ପାଇଛନ୍ତି, ଅଥଚ ତା'ଙ୍କର ସିଦ୍ଧାନ୍ତ, ସେ ଅଧ୍ୟାପକ ଚାକିରି କରିବେ । ଭିକ ମାଗିବେ ଶେଷକୁ । କାହାର କ'ଣ ଯାଉଛି ! ଆମେ କ'ଣ ଯାଙ୍କୁ ଜୀବନଯାକ ପୋଷୁଥିବୁକି ?

କୁଳମଣି ବାବୁ ପ୍ରକୃତରେ ରାଗିଯାଇଥିଲେ । କିରଣ କ'ଣ ଠିକ୍ କଲା କେଜାଣି ? କିନ୍ତୁ କୁଳମଣି ବାବୁଙ୍କର ମେଧାବୀମାନଙ୍କୁ ଶିକ୍ଷକ କରିବାର ଯୁକ୍ତି ନିଜ ପୁଅ ପାଖରେ ଫଟାଦର୍ପଣ ପରି ବିକୃତ ହୋଇ ଯାଉଥିଲା ।

ଏଠାରେ ଗୋଟିଏ କଥା କହିବା ମୋତେ ଅପ୍ରାସଙ୍ଗିକ ହେବ ନାହିଁ ପାଠକେ—କୁଳମଣି ବାବୁ ନିଜେ ଜଣେ ଅଧ୍ୟାପକ । ଖୁବ୍ ମେଧାବୀ ଛାତ୍ର ଥିଲେ ସେ । ଏକୋଇଶ ବର୍ଷର ଚାକିରି ଜୀବନ ଭିତରେ ସେ ସେଇ ଅଧ୍ୟାପକ ଅଛନ୍ତି । ପ୍ରମୋସନ ନାହିଁ ।

କୁଳମଣି ବାବୁ ଇଞ୍ଜିନିୟର କି ଡାକ୍ତର ହୋଇଥିଲେ, ପୁଅକୁ ନିଜ ବୃତ୍ତି ଭିତରକୁ ଭିଡ଼ିଥାଆନ୍ତେ କି ନାହିଁ ତାହା ଅବଶ୍ୟ ଚିନ୍ତା କରିବାର କଥା ।

୧୭—୪—୮୫

# ଗୋଡ଼ ମାଟି ପର ଭାଗ୍ୟ

କଟକର ମଙ୍ଗଳା ଆଇରନ୍ ଓ୍ୱାର୍କସରେ ବାର ବରଷର ପିଲା, ସୀମାଚଳ ଖୋଲା ଆଖିରେ ଲୁହା ଝଲେଇ କରୁଛି । ଏସିଟିଲିନ ଗ୍ୟାସରୁ ନିଆଁ ଝୁଲ ବିଛାଡ଼ି ପଡ଼ୁଛି ଚାରିଆଡ଼େ । ଏଇଭଳି ଝଇମଲ ନିଆଁକୁ ଖାଲି ଆଖିରେ କ୍ରମାଗତଭାବେ ପ୍ରତିଦିନ ଦେଖିଲେ, ତିନି ଚାରିବରଷରେ ଆଖି ନଷ୍ଟ ହୋଇଯିବ ବୋଲି ଡାକ୍ତରଙ୍କର ମତ । ଅଥଚ ପେଟପାଇଁ ନିଜ ଆଖି ଦୁଇଟିକୁ ତିଳ ତିଳ କରି ନଷ୍ଟ କରିବାକୁ ପଡ଼ୁଛି ସୀମାଚଳକୁ ।

ଭୁବନେଶ୍ୱରର କାଲୁ ମୋଟର ଗ୍ୟାରେଜରେ ଏଗାର ବରଷର ଅଜିମ୍ ହେଲ୍‌ପର କାମ କରୁଛି । ଦେହ ମୁଣ୍ଡରୁ ତା'ର କଳାର ଦାଗ କେବେ ଲିଭେନି । ଖାଇଲା ବେଳେବି ହାତରେ ତା'ର ବାଲୁ ବାଲୁ କଳା । ହାଡ଼ କିଟି କିଟି ଦେହ । ମୁଣ୍ଡବାଳ ଫୁର୍‌ଫୁର୍, ଚିରା ପ୍ୟାଣ୍ଟ । କାଲୁମିଆଁ ମଝିରେ ମଝିରେ ଗଡ଼ିକରେ—"ଆବେ ଅଜିମ୍ ଚା' ଏକ୍ କପ୍ ଲାଓ" ଦିନେ ଚା' ଖରାପ ଲାଗିଲା । "ଶାଲା କହାଁସେ ମୁଫତ୍ ଲେ ଆୟା ଚା' " କହି କାଲୁମିଆଁ ଛାଟିଦେଲା ଚା'ତକ ଅଜିମ୍‌ର ଛାତି ଉପରକୁ । ଅଜିମ୍‌ର ଛାତିରେ ଏଡ଼େ ଏଡ଼େ ଫୋଟକା ।

ପୁରୀର "କ୍ଷୁଧା ହରଣ ହୋଟେଲ"ରେ ଦଶ ବରଷର ଗୋପାଳ ବାସନ ଧୁଆଧୋଇ କାମ କରେ । ସକାଳ ପାଇଲେ ତା'ର କାମ ହେଲା, ହୋଟେଲ ପଛର ପାଣି ପଚପଚ, ମାଛି ଭଣଭଣ ଜାଗାରେ ଗୋଟିଏ ଅସନା ପାଣିକୁଣ୍ଡର ଦାଢ଼ରେ ବସି, ଅଇଁଠା ବାସନଗୁଡ଼ିକୁ ବୁଡ଼େଇ ଧୋଇବା ଏବଂ ଭିତରକୁ ବୋହିନେବା, କାମରେ ତା'ର ବିରାମ ନାହିଁ । ପାଣିରେ ହାତ ବୁଡ଼େଇ ବୁଡ଼େଇ ଆଙ୍ଗୁଠି ସନ୍ଧିରେ ତା'ର ପାଣିକନ୍ଦା ଘା' । ଗୋଡ଼ ଆଙ୍ଗୁଠିର ନଖଗୁଡ଼ିକ ତା'ର ମରିଗଲଣି । ନଖ କୋଣରେ

ପୂଜ । ଗୋପାଳର ପେଟଟି ପାଛିଆ ପରି, ଗୋଡ଼ଗୁଡ଼ିକ କାଠି । କେତେ-ବର୍ଷ ସେ ଆଉ ବଞ୍ଚିବ କେଜାଣି ?

ଗଉରକେଇରେ ନବଘନ ବାବୁଙ୍କର ଘରେ ନଅ ବରଷର ନଟିଆ ଗ୍ଭକର କାମକରେ । ବାବୁଙ୍କର ପିଇଟିକୁ କାଖେଇ କୁଣ୍ଢେଇ ଆକଟ କରିବା ତା'ର କାମ । ନବଘନ ବାବୁଙ୍କର ଓଜନିଆଁ ପୁଅଟିକୁ କାଖେଇ କାଖେଇ ନଟିଆର ଅଣ୍ଟାଟି ଅଣଦେଢ଼ ହେଇଗଲଣି । ମନେହେବ ଅନବରତ ନଟିଆ ଯେମିତି ପାଣିଭର୍ତ୍ତି ପିତଳ ଗରଟିଏ କାଖେଇଚି । ବେଳେବେଳେ ନଟିଆ ଗେଷେଇ ମଧ୍ୟ କରେ । କଥାକଥାକେ କାନମୋଡ଼ା ଖାଏ । ସେ ଦିନ ନବଘନ ବାବୁଙ୍କର ପୁଅଟି ଚଉକୀ ଉପରୁ ତଳକୁ ଗଡ଼ିପଡ଼ିଲ । "କାହିଁକି ଚଉକୀ ଉପରେ ବସେଇଥିଲୁ" ବୋଲି ନଟିଆ ଉପରେ ନିର୍ଘାତ ମାଡ଼ । ନଟିଆ ଦେହରେ ନୋଳା ଫାଟିଗଲ । ହେଲେ ଆଠ ବରଷର ନଟିଆ, ଗ୍ଭକିରୀ ଛାଡ଼ି ଯାଇ ପାରୁଚି କେତେକେ !

ନଅ ବରଷରୁ ବାର ବରଷ ଭିତରେ ଏ ପିଇଗୁଡ଼ିକ ଆମ ସମାଜରେ ଗୋଟିଏ ଗୋଟିଏ ସାନ ନାଗରିକ । ଏମାନଙ୍କ ସଂଖ୍ୟା କିଛି କମ୍ ନୁହେଁ ଏ ଦେଶରେ । ପ୍ରତ୍ୟେକ ବାବୁ ଘରର ଅବୟବ ଅନ୍ତରଗଳରେ ନିଶ୍ଚୟ ଥିବ ଏମାନଙ୍କ ଭିତରୁ ଗୋଟିଏ ଯୋରି ହୋଇ ଯାଉଥିବା ଭେକିଲ ଦେହ ।

ଭରତ ସ୍ୱାଧୀନ ହେବାପରେ ନିଜ ଶାସନକୁ ନିଜେ ଆୟତ୍ତ କଲ । ସମ୍ବିଧାନରେ ପ୍ରଣୀତ ହେଲ—ପ୍ରତ୍ୟେକ ନାଗରିକର ଶୋଷଣ ବିରୁଦ୍ଧରେ ଅଧିକାର ରହିବ । ମଣିଷକୁ ବିକାକିଣା ପଦାର୍ଥପରି ବ୍ୟବହାର କରଯିବ ନାହିଁ । ଚଉଦ ବରଷରୁ ଊଣା ବୟସର କୌଣସି ପିଲକୁ କୌଣସି ସଙ୍କଟ-ମୟ କାର୍ଯ୍ୟରେ ନିୟୋଜିତ କରଯିବ ନାହିଁ ।

୧୯୫୦ ମସିହାରେ ଘୋଷିତ ହେଲ—ଏହି ସମ୍ବିଧାନ ଗ୍ଭଲୁ ହେବା-ଠାରୁ ଦଶବର୍ଷ ଭିତରେ ରାଜ୍ୟର ସବୁ ପିଲଙ୍କୁ ସେମାନଙ୍କର ଚଉଦବର୍ଷ ପୂରଣ ହେବାଯାଏଁ ବାଧ୍ୟତାମୂଳକ ଶିକ୍ଷା ଦେବାପାଇଁ ପ୍ରୟାସ ଗ୍ଭଲୁ-ରହିବ ।

ପଞ୍ଚତିରିଶ ବର୍ଷ ବିତି ଗଲଣି । ପ୍ରୟାସ ଗ୍ଭଲୁରହିବା କଥା ଚିନ୍ତାକର ଗ୍ଭଲିଛି ହୁଏତ । ଲେକମାନଙ୍କୁ ଅଧିକାର ମିଳିଛି—ଶୋଷଣ ରହିବ ନାହିଁ । ହେଲେ ନିଃସ୍ୱ, ଦରିଦ୍ର ଚିରକାଙ୍ଗାଳ ଲେକର ଅଧିକାର ପୁଣି କ'ଣ ? କେଉଁ ଅଧିକାର ? ଦେଶ ଜନମଙ୍ଗଳ ହେଉଛି । ମଣିଷକୁ ତା'ର ସର୍ବନିମ୍ନ ଆବଶ୍ୟକତା ଯୋଗେଇ ଦିଆଯିବ । ଦେଶ ପ୍ରଗତି ପଥେ ଆଗେଇ ଗ୍ଭଲିଛି । ଗରିବ ଖଟିଖିଆ ଲେକଙ୍କ ପାଇଁ ଯୋଜନାରେ ଅଗ୍ରପ୍ରଧାନ୍ୟ ଦିଆଯାଉଛି

ବୋଲି ଖବର କାଗଜରେ ଅଗ୍ରଲେଖା ପ୍ରକାଶ ପାଉଛି । କୋଠା ପରେ କୋଠା ମତେଇହୋଇ ପଡୁଚି ଘରିଆଡ଼େ । ସରକାର ଅଫିସ୍‌ମାନଙ୍କ ଆଗରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚରେ ସୌଖୀନ୍ ଲନ୍ ଓ ବଗିଗ୍ଚ ତିଆରି ହେଉଛି । ମହାକାଶକୁ ଉପଗ୍ରହ ଯାଉଛି । ଟେଲିଭିଜନ ଶସ୍ତା ହେଉଛି, ଭ୍ୟାନିଟି ବ୍ୟାଗ୍ ଉପରୁ କର ଛାଡ଼ ହେଉଛି । ଗରିବଙ୍କୁ ମାଗଣାରେ ନ୍ୟାୟ ମିଳିବ ବୋଲି ବଦାନ୍ୟତାର ସ୍ୱର ଶୁଭୁଛି । ଦେଶରୁ ଶୋଷଣ ଦୂରେଇ ଯାଉଛି !

ହେଲେ ଏମାନଙ୍କୁ କାଙ୍ଗାଳ କଲା କିଏ ? ମାଗଣାରେ କେଉଁ ଧନୀମାନେ ନ୍ୟାୟ ଦେବେ ଏମାନଙ୍କୁ ? କିଏ କରିବ ସୀମାଚଳକୁ ମୁକ୍ତ ? ଅଜିମ୍‌କୁ ଆଦର କରିବ କିଏ ? ଗୋପାଳକୁ କିଏ ଦବ ତା'ର ସର୍ବନିମ୍ନ ଆବଶ୍ୟକତା ! ନଟିଆ ନଅ ବରଷ ବୟସରେ ଚାକିରୀ କରୁଛି—ତା'କୁ ତା'ର ବାଳକତ୍ୱ ଫେରାଇ ଦେବ କିଏ ? ଭଦ୍ରଘରର ପିଲା ହୋଇଥିଲେ ଏମାନେ ସ୍କୁଲରେ ବସି ପାଠ ପଢୁଥାଆନ୍ତେ ନିଶ୍ଚୟ । ସ୍କୁଲର ପିକ୍‌ନିକ୍ ପାଇଁ ଏମାନେ ପଇସା ମାଗି ନେଉ ଥାଆନ୍ତେ ଘରୁ । ଜନ୍ମ ହେବାଦିନୁ ଏମାନଙ୍କୁ ମଣିଷ-ଭଳି ଅଭିନୟ କରିବାକୁ ପଡୁଛି । ପିଲା-ବେଳ କାହିଁ ଏମାନଙ୍କର ? ଏମାନ-ଙ୍କର ପିଲାବେଳର ଅଧିକାର କିଏ ସେ ଆଣିଦେବ ଏବେ ?

ସୀମାଚଳ, ଅଜିମ୍, ଗୋପାଳ ଓ ନଟିଆ ସଭିଏଁ ଏଇ ଦେଶର ଲୋକ । ଏକାଘରର ପିଲା । ଅଥଚ ଅନ୍ୟ ବାଳକମାନେ ସମାଜରୁ ଯେଉଁ ଭାଗ ପାଆନ୍ତି ତାହା ଏମାନଙ୍କ ଭାଗ୍ୟରେ ନାହିଁ । କେଉଁ ଭାଗ୍ୟ ଅବା ଏ ମାଛିଆ ମଣିଷପିଲା ଗୁଡ଼ିଙ୍କର ! ପେଟ ପାଇଁ ଏ ଜନମଙ୍ଗଳ ରାଷ୍ଟ୍ରରେ ଏ ପିଲାଗୁଡ଼ିକ ପଶୁପରି ଖଟୁଛନ୍ତି ।

ସମ୍ବିଧାନରେ ଆଇନ୍ ହୋଇଛି, ହେଲେ ସେ ଆଇନ୍ ବିଷୟରେ ଚିନ୍ତା କରୁଛି କିଏ ! କେଉଁ ନାଗରିକ ? ଯେଉଁ ଦେଶରେ, ପିଲାବେଳେ, ପିଲାଭଳି ବଞ୍ଚିବାକୁ ଅଧିକାର ମିଳେନା,କେଉଁ ଗଣତନ୍ତ୍ର ଚାଲେ ସେଠାରେ ! କୋଟି କୋଟି ଲୋକଙ୍କର ସ୍ୱପ୍ନକୁ କଡ଼ମଡ଼ କରି ଚୋବାଇ ସୁଖରେ ଥିବା କେତେକ ମୁଷ୍ଟିମେୟ ଲୋକେ କେଉଁ ଜନମଙ୍ଗଳ ରାଷ୍ଟ୍ରର ପରିଚାୟକ ବୋଲି କୁହାଯିବ ?

ବାଲେଶ୍ୱର ଷ୍ଟେସନ୍‌ରେ ଗୁଡ଼ିଏ ଛେଉଣ୍ଡ ପିଲା ବୁଲୁଛନ୍ତି । ଛେଳି ପଲପରି ଲେକିଲ ମଣିଷ ଛୁଆ । ଗୋଟିଏ ପିଲାକୁ ଡାକି ପଚାରିଲି, 'ତୋ'ର ନାଁ କ'ଣ ? ଉତ୍ତର ମିଳିଲା "ସ୍ୱାଧୀନ୍" । ଆହା, କେତେ ଭାବନାରେ ବାପ'ମା ନାଁ ଦେଇଥିବେ ସ୍ୱାଧୀନ୍ । ସତରେ କେତେ ସ୍ୱାଧୀନ ଏ ସ୍ୱାଧୀନ୍ ?

ଆମ ଦେଶ ଏକ ଜନମଙ୍ଗଳ ଦେଶ । ହେଲେ କେବେ ସାମିଲ ହେବେ ଏ ସ୍ୱାଧୀନ୍‌ମାନେ ଆମ ଦେଶର ଅର୍ଥନୀତିକ ଯୋଜନାରେ ! କେବେ ସ୍ୱାଧୀନ ମଙ୍ଗଳ ହେବ ଏ ରାଷ୍ଟ୍ର ?

( ୨୪-୪-୮୬ )

## ପଇତା ପ୍ରସଙ୍ଗ

"କାଳକ୍ରି ପଇତାକୁ ବର୍ଜନ କର । ଅତୀତ କାଳରୁ ଏ ପଇତା ବ୍ରାହ୍ମଣମାନଙ୍କର, ସମାଜରେ ଥିବା ଅନ୍ୟ ଜାତିର ଲୋକଙ୍କୁ ଶୋଷଣ କରିବାରେ ଏକ ଜାତିଗତ ଚିହ୍ନ ଭଳି କାମ କରି ଆସିଛି । ତା'ଛଡ଼ା ଆଜିକାଲିର ଏ ଜାତିପ୍ରଥା ବିଲୋପ କରିବାକୁ ପାଦ ବଢ଼ାଇଥିବା ସମାଜରେ ଏଥିରୁ ଗୋଟାଏ ଅନାବଶ୍ୟକ ଅହଂସ୍ମୃତିକୁ ଦେହରେ ପକାଇବା ପଛରେ କିଛି ଯୁକ୍ତି ନାହିଁ । ଅତଏବ ପ୍ରିୟ ଯୁଧିଷ୍ଠିର ବାବୁ; ତୁମେ ଏ ଅନାବଶ୍ୟକ ପଇତାଟିକୁ ବର୍ଜନ କର ।"

ସେଦିନ ରାମଚନ୍ଦ୍ର ବାବୁ ଆଲୋଚନାପୂର୍ବକ ଅନୁରୋଧ କରୁଥିଲେ ଯୁଧିଷ୍ଠିର ବାବୁଙ୍କୁ ଏଇ ମର୍ମରେ । ଯୁଧିଷ୍ଠିର ମିଶ୍ରେ ବ୍ରାହ୍ମଣ ଅବଶ୍ୟ, ଜାତିପ୍ରଥାରେ ସେତେ ବିଶ୍ୱାସ ନାହିଁ ତାଙ୍କର, ହେଲେ ପଇତାଟିକୁ ସେ ଛାଡ଼ିବାକୁ ନାରାଜ । କିନ୍ତୁ ରାମଚନ୍ଦ୍ର ଛାଡ଼ିବା ଲୋକ ନୁହଁନ୍ତି । ସାମାଜିକ ସଂସ୍କାରକୁ ବ୍ରତ କରି, ଅନୁଷ୍ଠାନଟିଏ ଗଢ଼ି ସେଥିରେ କେତେକ ଲକ୍ଷ୍ୟ ରଖି ଦିନରାତି ଲାଗିଛନ୍ତି ସେ । ପଇତା ବିଲୋପ ମଧ୍ୟ ସେ ଲକ୍ଷ୍ୟରୁ ଗୋଟିଏ ।

ତା'ଙ୍କ ମତରେ ସମାଜରେ ସବୁ ବିଭ୍ରାଟର ମୂଳ ଜନସଂଖ୍ୟା ଏବଂ ସବୁ ସାମାଜିକ ଅସ୍ୱାସ୍ଥ୍ୟମୂଳରେ ଏଇ ଜଘନ୍ୟ ଅକଟୋପସ୍ ରୂପକ ଜାତିପ୍ରଥା ଜଡ଼ିତ । ତେଣୁ ଜାତିପ୍ରଥାକୁ ଜଳଜଳ କରି ସାବ୍ୟସ୍ତ କରୁଥିବା ପଇତା ବିରୁଦ୍ଧରେ ତା'ଙ୍କର ଏ ନଛୋଡ଼ବନ୍ଧା ପଦକ୍ଷେପ ।

ନିଜକୁ ବ୍ରାହ୍ମଣ ବୋଲଉଥିବା ମଣିଷମାନେ ଯେ, କାନ୍ଧରେ ପଇତା ଧାରଣ କରନ୍ତି ତାହା ନିଶ୍ଚିତ । ତା' ଛଡ଼ା ଓଡ଼ିଶାରେ ଖଣ୍ଡାୟତ ଓ କ୍ଷତ୍ରିୟ ଜାତିରେ ବିଶ୍ୱାସ କରୁଥିବା ଲୋକେ ମଧ୍ୟ ପଇତା ପକାଇ ନିଜର ଜାତିଗତ ଉତ୍କର୍ଷତା ପ୍ରତିପ୍ରାଦନ କରନ୍ତି । ଗଣ୍ଡା ପୂର୍ଣ୍ଣମୀରେ ବର୍ଷକରେ ଦିନେ ଗାଁ ଗହଳିରେ ପୁରୋହିତମାନେ ଅନ୍ୟ ଜାତିର ଲୋକମାନଙ୍କୁ ଗଣ୍ଡା ପଇତା ବାଣ୍ଟିବାର ବିଧି ଏବେ ମଧ୍ୟ ରହିଛି । ଉପବୀତ ବା ପଇତା ନାମକ କେଇଖିଅ ସୂତା ଦେହରେ ପକାଇ, ଡିଗ୍ରୀପ୍ରାପ୍ତ ସମୟରେ ଗାଉନ୍ ପକାଇ ସମାବର୍ତ୍ତନ ମଣ୍ଡପକୁ ଉଠୁଥିବା ଯୁବକର ଉଚ୍ଚ୍ଛ୍ୱ ମୁଖପରି ପଇତାଧାରୀ ଯେ, କୌଣସି ଏକ ଉଲ୍ଲାସରେ ଉଚ୍ଛ୍ୱ ଦେଖାଯାଆନ୍ତି ସେ କଥା ସହଜରେ ଲକ୍ଷ୍ୟ କରାଯାଇପାରେ ।

ତେଣୁ ଉତ୍ତରରେ ଯୁଧିଷ୍ଠିର ବାବୁ ରାମଚନ୍ଦ୍ରଙ୍କ ଆଗରେ ଯୁକ୍ତି କରିଥିଲେ–ପଇତା ବର୍ଜନ ପାଇଁ ବ୍ରାହ୍ମଣ ବା କୌଣସି ଜାତିର ଲୋକଙ୍କୁ କହିବା ଅପେକ୍ଷା, ଅନ୍ୟମାନଙ୍କୁ ପଇତା ପକାଇବା ପାଇଁ କହୁ ନାହାନ୍ତି କାହିଁକି ? ଶୁଣାଯାଏ ଦକ୍ଷିଣ ଭାରତରେ କିଛିବର୍ଷ ତଳେ ଏକ ସଂସ୍କାରକ ଗୋଷ୍ଠୀ, ଗଣବ୍ରତୋପନୟନ ଉତ୍ସବ ପାଳନ କରି ହରିଜନମାନଙ୍କ ସମେତ ବିଭିନ୍ନ ଜାତିର ଲୋକଙ୍କୁ ପଇତା ଧାରଣ କରିବାକୁ ପ୍ରବର୍ତ୍ତାଇଥିଲେ ।

ପଇତାର ସଂସ୍କୃତ ନାମ ଯଜ୍ଞୋପବୀତ । ପ୍ରଶ୍ନ ହେଉଛି, ସତରେ କ'ଣ ଏହା କେବଳ ଅହଂର ପ୍ରତୀକ ? ଜାତିଗତ ଏକ ଦମ୍ଭୋକ୍ତିର ପରିଚୟ ଛଡ଼ା ପ୍ରକୃତରେ ଏହାର କ'ଣ କୌଣସି ବ୍ୟବହାରଗତ ଆବଶ୍ୟକତା ନାହିଁ ? ହଜାର ହଜାର ବର୍ଷ ହେବ ଏକ ପ୍ରବହମାନ ସାମାଜିକ ଜୀବନରେ ଜଡ଼ି ରହିଥିବା କେଇଖିଅ ସୂତା ପ୍ରକୃତରେ କେଉଁ ବୈଶିଷ୍ଟ୍ୟ ପ୍ରତିପାଦନ କରେ ?

କିଛି ବର୍ଷ ତଳେ "ଟାଇମସ୍ ଅଫ୍ ଇଣ୍ଡିଆ" ଇଂଲଣ୍ଡର "ଏଲିଜାବେଥ୍ ହସପିଟାଲ"ରେ ଗବେଷଣା କରୁଥିବା ଜଣେ ଡାକ୍ତରଙ୍କର ଉକ୍ତି ପ୍ରଦାନ କରିଥିଲେ । ତାଙ୍କ ମତରେ ଭାରତରେ କିଛି ଲୋକଙ୍କ ଭିତରେ ପ୍ରଚଳିତ ଏଇ ଉପବୀତର ଏକ ବୈଜ୍ଞାନିକ ଦୃଷ୍ଟିକୋଣ ମଧ୍ୟ ରହିଛି । ସାଧାରଣତଃ ମୂତ୍ର ବା ମଳତ୍ୟାଗ ସମୟରେ ପଇତାକୁ କାନମୂଳରେ ଗୁଡ଼ାଯାଇ ଥାଏ । ଏ ବିଧି ଏକ ଧାର୍ମିକ ରୀତି ଭାବରେ ଗୃହୀତ । ମାତ୍ର ପ୍ରକୃତ କଥା ହେଉଛି, କାନମୂଳରେ "ଭ୍ୟାଗ୍ସ ତନ୍ତ୍ରୀ" ନାମକ ଏକ ସୂକ୍ଷ୍ମତନ୍ତ୍ରୀ ଅବସ୍ଥିତ । ଏହାକୁ ସ୍ପର୍ଶସଙ୍କୋଚନଜନିତ ଅଭ୍ୟାସ ସହ ପରିଚୟ କରାଇଲେ ତାହା ସହଜ ନିଷ୍କାସନ ପ୍ରକ୍ରିୟାରେ ସହାୟକ ହୋଇଥାଏ । ଅତଏବ ଅଭ୍ୟାସକ୍ରମେ ପଇତାଟିକୁ କାନରେ ଗୁଡ଼ାଇଲେ ଯେ ମଳମୂତ୍ର ନିଷ୍କାସନ ସାବଲୀଳ ହୋଇଥାଏ, ଏହା ଥିଲା ତାଙ୍କର ଯୁକ୍ତି ।

ମାତ୍ର ମିଥ୍ ଅନଯାୟୀ କଥିତ ଅଛି ଯେ, କର୍ଣ୍ଣମୂଳରେ ପୁଣ୍ୟତୋୟା ଗଙ୍ଗା ବିଦ୍ୟମାନା ଥିବାରୁ ମଳମୂତ୍ର ତ୍ୟାଗଭଳି ଅପରିଷ୍କାର କାର୍ଯ୍ୟ ବେଳେ ପଇତାକୁ ଗଙ୍ଗାତଟରେ ଅର୍ଥାତ୍ କର୍ଣ୍ଣ ମୂଳରେ ବେଷ୍ଟନ କଲେ ତାହା ସୁଚିମନ୍ତ ରହିଥାଏ ।

ସେ ଯାହାହେଉନା କାହିଁକି, ପଇତା ଯେ ଅଦରକାରୀ ସେ କଥା-ଟିକୁ ଏ ଯାଏ ବୈଜ୍ଞାନିକ ଦୃଷ୍ଟିକୋଣରୁ ଭାରତରେ କେହି ଗବେଷଣା କରି ପ୍ରତିପାଦନ କରିନାହାନ୍ତି । ଅଦରକାରୀ ବୋଲି ପ୍ରମାଣିତ ହେଲେ ଶିକ୍ଷିତ ସମାଜରୁ ଏହା ଦୂର କରିବା ପାଇଁ କେହି କେହି ଯତ୍ନ କରନ୍ତେ ନିଶ୍ଚିତ ।

ଭାରତୀୟ ସଂସ୍କୃତି, ଶ୍ଳୋକ ବା ମନ୍ତ୍ର ସହ ଅନେକ ଜଡ଼ିତ ଏବଂ ପ୍ରତ୍ୟେକ ଶ୍ଳୋକର ଅନ୍ତରାଳରେ ଏକ ସାମାଜିକ ହିତ ପ୍ରଚ୍ଛନ୍ନ ଭାବରେ ଥିବା ସହଜରେ ଅନୁମେୟ । ଯେମିତି—ଜୀର୍ଣ୍ଣ ବା ଅପବିତ୍ର ଉପବୀତକୁ ତ୍ୟାଗକରି ନୂତନ ଉପବୀତ ଧାରଣବେଳେ ଉଚ୍ଚାରଣ କରଯାଉଥିବା ମନ୍ତ୍ରଟି ହେଲା—ଓଁ ଯଜ୍ଞୋପବୀତଂ ପରମଂ ପବିତ୍ରଂ ବୃହସ୍ପତେର୍ଯ୍ୟତ୍ସହଜଂ ପୁରସ୍ତାତ୍ । ଆୟୁଷ୍ୟମଗ୍ର୍ୟଂ ପ୍ରତିମୁଞ୍ଚଶୁଭ୍ରାଂ ଯଜ୍ଞୋପବୀତଂ ବଳମସ୍ତୁ-ତେଜଃ ॥

ଅର୍ଥାତ୍ ପଇତା ପରମ ପବିତ୍ର ଅଟେ । ଦେବତାମାନଙ୍କ ମଧ୍ୟରେ ଅଗ୍ରଜ ଭାବରେ ଖ୍ୟାତ, ବୃହସ୍ପତିଙ୍କର ଜନ୍ମ ସମୟରେ ଏହି ଯଜ୍ଞୋପବୀତ ତାଙ୍କ ଶରୀରରେ ସଂଲଗ୍ନ ହୋଇ ପ୍ରକାଶ ଲାଭ କରିଥିଲା । ଏହା ଆୟୁ ବର୍ଦ୍ଧକ, ଶୁଭ୍ରଦୀପ୍ତିରେ ପରିପୂର୍ଣ୍ଣ ଏବଂ ଏହା ସର୍ବାଗ୍ରରେ ରହିବାର ଯୋଗ୍ୟ । ଏପରି ଯଜ୍ଞୋପବୀତକୁ ଧାରଣ କର । ଏହା ତୁମର ଐଶ୍ବର୍ଯ୍ୟ ଓ ବୀର୍ଯ୍ୟର କାରକ ହେଉ ।

ଏଥିରୁ ସୂଚିତ ଯେ, ପଇତା ନିର୍ମଳତା ବା ପବିତ୍ରତାର ପ୍ରତୀକ । ଦେହରେ ଏ ପବିତ୍ରତାର ଚିହ୍ନଟିକୁ ପକାଇ ମଣିଷ ସବୁବେଳେ ସଚେତନ ରହେ ଯେ, ସେ ସବୁ ସମୟରେ ପରିଷ୍କାର ରହିବା ଉଚିତ । ପରିଷ୍କାର ରହିଲେ ତା'ର ମନ ଏବଂ ଶରୀର ପବିତ୍ର ବା ସ୍ୱାସ୍ଥ୍ୟପୂର୍ଣ୍ଣ ରହିବ ।

ତେଣୁ ପଇତା, ଯଦି ଆବଶ୍ୟକତା ଦୃଷ୍ଟିରୁ ମଳମୂତ୍ର ନିଷ୍କାସନରେ ପ୍ରକୃତରେ ସହାୟକ ଏବଂ ଅହରହ ପ୍ରବୃତ୍ତିର ଦାସ ହେବା ପାଇଁ ଧାଉଁଥିବା ମଣିଷ ପାଖରେ ପବିତ୍ରତାର ଏକ ପ୍ରତୀକ ରୂପେ ବିଦ୍ୟମାନ, ତେବେ ଏହାକୁ ଧାରଣ କରିବାରେ ବିରୋଧ କେଉଁଥିପାଇଁ ।

କାହିଁକି, କେବଳ ବ୍ରାହ୍ମଣ, କ୍ଷତ୍ରିୟ ବା ଖଣ୍ଡାୟତମାନେ ଏହାକୁ ନିଜର ଜାତିଆଣ ଚିହ୍ନ ବୋଲି କହୁଛନ୍ତି ? କାହିଁକି ବ୍ରାହ୍ମଣଟିଏ କେବଳ ପଇତାକୁ ଧରି ଅହଂଦୀପ୍ତ ହେବ ?

ତେଣୁ ଯୁଧିଷ୍ଠିର ବାବୁଙ୍କର ମତ ସମସ୍ତେ ପଇତା ଧାରଣ କରନ୍ତୁ । ଶୁଚିମନ୍ତ ହୁଅନ୍ତୁ ସଭିଏଁ ।

ରାମଚନ୍ଦ୍ର ବାବୁ, ଯୁଧିଷ୍ଠିର ବାବୁଙ୍କର ଏ ସବୁ ଯୁକ୍ତିରେ ଏକମତ ହୋଇଥିବେ କି ନାହିଁ ତାହା କହିବା କଷ୍ଟକର । ମାତ୍ର, ଲେଖକର ରାମଚନ୍ଦ୍ର ବାବୁଙ୍କୁ ନିବେଦନ–କୌଣସି ସାମାଜିକ ପରମ୍ପରାକୁ ଦୂରେଇଦେବା ପୂର୍ବରୁ ତା'ର କୌଣସି ପ୍ରୟୋଗାତ୍ମକ ବା ପ୍ରତୀକାତ୍ମକ ଗୁଣ ଅଛି କି ନାହିଁ ତାହା ଜାଣିବା ନିମନ୍ତେ ଯଥାଯଥ ଚେଷ୍ଟା କରିବା ବିଧେୟ ନୁହେଁ କି ?

(୧–୫–୮୫)

## ବଂଚିବାର ବୟସ

ନଡ଼ିଆ ଗଛଟିଏ ଏତେ ହାତ ଉଚ୍ଚ । ଅଜଗର ସାପଟିଏ ଏତେ ହାତ ଲମ୍ବ । କାଗେଜି ଲେମ୍ବୁଟିର ଆକାର ଏଇଭଳି ।

ବିଭିନ୍ନ ପଦାର୍ଥମାନଙ୍କର ଏହିପରି କିଛିକିଛି ନିର୍ଦ୍ଦିଷ୍ଟତା ସମ୍ପର୍କରେ କଥାଟି କହିଲାବେଳେ, ବଞ୍ଚିବାର ବୟସ ସମ୍ପର୍କରେ କଥାଟିକୁ ମନେପକାନ୍ତୁ ତ, କେଡ଼େ ହେମାଳି ମନେହେବ ଆପଣଙ୍କ ବିଷୟଟି ! କୌଣସି ଜୀବ ଯେ ଏତିକି ବର୍ଷ ବଞ୍ଚିବ ସେକଥା କ'ଣ କେହି ହଲପ କରି କହି ପାରିବ ?

ମଣିଷଟିଏ ଶହେ କୋଡ଼ିଏ ବର୍ଷ ବଞ୍ଚିପାରେ, କୋଡ଼ିଏ ମୁହୂର୍ତ୍ତ ମଧ୍ୟ ବଞ୍ଚିନପାରେ ଜନ୍ମ ପରେ ପରେ । ସାତ ମାସର ମଣିଷ ଗର୍ଭକୁ କାନ ପତେଇଲେ ଶୁଭିବ କେମିତି ବଞ୍ଚିବାର ବୟସ ଦୁଲୁକିବାକୁ ଆରମ୍ଭ କରିଛି ଭିତରେ । କିଏ କହିବ, ଏ ବୟସ କେତେ ମୁହୂର୍ତ୍ତର ନା କେତେ ସମ୍ବତ୍ସରର ! କିନ୍ତୁ ଜନ୍ମ ସହିତ ଜୀବନକୁ ଆମେ ଯେତେ ଆପଣାର କରୁ, ମୃତ୍ୟୁକୁ ସେତେ କରିପାରୁନା କେବେ, ସତେ ଯେମିତି ମୃତ୍ୟୁ, ପ୍ରତ୍ୟେକ ଜନ୍ମର ଅବଶ୍ୟମ୍ଭାବୀ ପରିଣତି ନୁହେଁ ଅବା !

ଆମ ଆଗରେ, ନାକ ଘୁଞ୍ଚୁରିଥିବା ଶହେ ଛ'କୋଡ଼ି ବର୍ଷର ବୁଢ଼ା-ବୁଢ଼ୀଙ୍କଠାରୁ ଆରମ୍ଭ କରି ମୃତଜାତ ବିକଳାଙ୍ଗ ଛୁଆମାନଙ୍କର ଜଳଜଳ ବାସ୍ତବତା ! ଯେ କୌଣସି ମୁହୂର୍ତ୍ତରେ ଯାହାକିଛି ଘଟିଯାଇପାରେ ଗୋଟିଏ ଜୀବର ଜୀବନରେ; ମାତ୍ର ମଣିଷ ସେଥିପ୍ରତି ମୋଟେ ସଚେତନ ନୁହେଁ । ମରଣଶୀଳ ପ୍ରତ୍ୟେକ ମଣିଷର ଇଚ୍ଛା, ଅମର ହୋଇ ରହନ୍ତାକି ! ମୃତ୍ୟୁ

ମୋଟେ ଆସନ୍ତା ନାହିଁ ତା'ର ଜୀବନରେ । ହେଲେ ଅମର ହେବାର ଦୁର୍ଭାଗ୍ୟ ସତରେ ମଣିଷ କ'ଣ କେବେ କଳ୍ପନା କରିପାରେ ?

ସାଂସାରିକ, ପ୍ରତ୍ୟେକ ପଦାର୍ଥର ବ୍ୟବହାରିକ ନିର୍ଦ୍ଦିଷ୍ଟ ସୀମାଭଳି, ବଞ୍ଚିବାର ବୟସର ମଧ୍ୟ ଏକ ନିର୍ଦ୍ଦିଷ୍ଟ ସୀମା ରହିଛି । ସେ ସୀମା ବାହାରେ ମଣିଷ ଅଦରକାରୀ ବସ୍ତୁଭଳି ଅସହାୟ । ବୈଶାଖରେ ବରଫ କଣାପରି ମଣିଷ କେବଳ ତରଳେ, ସେ ସୀମା ବାହାରେ, ସରିସରି ଆସୁଥାଏ ବେଳୁ ବେଳୁ । କିନ୍ତୁ ଅବଧାରିତ ହେବାର ମୋଟେ ସମ୍ଭାବନା ନଥାଏ ଆଉ ସେତେବେଳେ ।

ପୁରାଣରୁ ଆମେ ପଢ଼ୁ, ରାବଣ ତପସ୍ୟାରେ ବସିଛି । ଘୋରତର ତପସ୍ୟାରେ ବୁଡ଼ି ରହିଚି ମହିଷାସୁର । ନିଜକୁ ତିଳ ତିଳ କରି ତପସ୍ୟା ବଳରେ ଜାଳି ଦେଉଛି ବିଲଙ୍କା ରାଜନ । ବ୍ରହ୍ମା ଆବିର୍ଭୂତ ହେଉଛନ୍ତି । ପ୍ରତ୍ୟେକ ମାଗିଛନ୍ତି– ପ୍ରଭେ ! ମୋତେ ଅମର ବର ମିଳୁ । ମାତ୍ର ଅମର ବର ମିଳେନା । ବ୍ରହ୍ମା କହୁଛନ୍ତି, ଆଉ ଯାହା ମାଗୁଛ ମାଗ । ବଞ୍ଚିବାର ବୟସ ଶେଷରେ ଯେଉଁ ଦିବ୍ୟ ସବୁଜଫାଟକଟି ଦେଖାଯାଉଛି, ତା'ରି ନାମ ମୃତ୍ୟୁ, ତୁମେ ଅବଶ୍ୟ ସେ ଦିଗରେ ଦିନେ ଅଗ୍ରସର ହେବ, ଏଇକଥା ଯେମିତି ବ୍ରହ୍ମା ସମସ୍ତଙ୍କୁ ବୁଝାଉଛନ୍ତି ବାରମ୍ବାର ।

ହେଲେ ସବୁବେଳେ ରାବଣମାନେ, ମହିଷାସୁରମାନେ ଯୁଗ ଯୁଗ ଧରି ବର ମାଗୁଛନ୍ତି–ପ୍ରଭେ ! ଆମକୁ ଅମର ବର ମିଳୁ । ଅମର ହେବା ସତରେ ଯେମିତି ଜୀବଜଗତର ସବୁଠାରୁ ବଳି ବଡ଼ ସୁଖ ।

ଅମର କଥାକୁ ପଛରେ ପକାଇ କେବଳ ଚିନ୍ତା କରାଯାଉ, ଏକ ଏକ ଶହ ବର୍ଷ ବୟସର ଜୀବନକୁ । ଏକଶହ ବର୍ଷ ବିତିଯିବା ପରେ କେତେ ଅସହାୟ ଲାଗେ ମଣିଷର ଜୀବନ । କେତେ କଣ୍ଟକମୟ ତା'ର ଦିନରାତି ।

ତା' ଆଗରେ ସବୁକିଛି ସମସାମୟିକ ନୁହନ୍ତି । ପରିଚିତ ଇଲାକାରେ ତା'ର କୁହୁଡ଼ିଆ ପରିବର୍ତ୍ତନ । ଅନ୍ୟ ମଣିଷଙ୍କ ସାଧାରଣତାରେ ସେ ଯେମିତି ଏକ ବ୍ୟତିକ୍ରମ । ଆବଶ୍ୟକତାରୁ କିଛିମାତ୍ର ଅଧିକ ବୟସ ବଞ୍ଚିଗଲେ ମଣିଷ, ଗୋଟିଏ ନମୁନା ହୋଇଯିବା ସ୍ୱାଭାବିକ୍; ସେପରି ସ୍ଥଳେ ଅମର ହୋଇ କିଏବା ସଂଗ୍ରହାଳୟରେ ସାମଗ୍ରୀ ହେବାକୁ ରାଜିହେବ ? ଅପର ପକ୍ଷରେ ସକଳ ଜୀବଜାତି, ଅମର ହେଲେ, ଆଉ ଏଣିକି ଜନ୍ମ ପାଇଁ ପ୍ରଶ୍ନ ରହିବ କେଉଁଠି ? ଅତଏବ ଗୋଟିଏ ନିର୍ଦ୍ଦିଷ୍ଟ ସମୟପରେ ସମସ୍ତେ କେବଳ ପ୍ରାର୍ଥନା କରିବେ, ପ୍ରଭୁ ! ମତେ କେବଳ ମୃତ୍ୟୁ ନାମକ ଅମୃତ ଟିକକ ଚଖେଇ ଦିଅ । ଯିଏ ଯେତେ ଅମର ହେଉଛନ୍ତି ପଛକେ ହୁଅନ୍ତୁ, ହେଲେ ମତେ ମୃତ୍ୟୁ ଦିଅ ।

ସତରେ କିଏ ଗ୍ରହିବ 'ରିପ୍ ଭ୍ୟାନ ଉଇଙ୍କଲ' ପରି ଚିଡ଼ିଆଖାନାର ଜୀବନକୁ ଠେଲି ହୋଇଯିବାକୁ ? ଗୋଟିଏ ଦିନର ରୋଗରେ, ଗୋଟିଏ ମୁହୂର୍ତ୍ତର ନିର୍ଜନତାରେ, ଗୋଟିଏ ଥରର ଅସଫଳତାରେ ଆତଙ୍କିତ ହୋଇ-ଯାଉଥିବା ମଣିଷ, କେବେ କ'ଣ ଗ୍ରହିବ- ଏଇଭଳି ଏକ ବାସ୍ତବତାର ତାଙ୍କ ତାଙ୍କ ଜୀବନକୁ ପଥରକରି ବେକରେ ପକାଇ ବଞ୍ଚିରହିବାକୁ ?

ଅମର ବର ଦେଇ ବ୍ରହ୍ମା ଯଦି କୁହନ୍ତେ– ବତ୍ସ ! ତୁମେ ଅମର ହୁଅ, ମାତ୍ରକ ପଞ୍ଚବିଂଶତି ବର୍ଷ ବୟସ ପରେ ତୁମେ ପକ୍ଷାଘାତରେ ପୀଡ଼ିତ ହୋଇ ଚିରକାଳ ରହିବ, ତେବେ କେଉଁ ମହିଷାସୁରର କଳିଜା ଆଉ ସମ୍ଭାଳି ପଡ଼ନ୍ତା ସେତେବେଳେ !

ବୟସ ବଞ୍ଚିବା ବଡ଼ କଥା ନୁହେଁ । ଅମର ହେବା ମଧ୍ୟ ନୁହେଁ । କଥା ହେଉଛି କେଉଁମାତ୍ରାରେ ସଫଳ କେଉଁ ଜୀବନ ! ଜୀବନ କେତେ ଆନନ୍ଦମୟ ଆପଣଙ୍କର ? ଆନନ୍ଦ ବିଭୋର ହୋଇ ମାତ୍ର ଗୋଟିଏ ମୁହୂର୍ତ୍ତ କଟାଇଦେବା କ'ଣ କମ୍ ଅଲୌକିକ, ଏ ଦୁଇପଟେ ନିଆଁ ଜଳୁଥିବା ସାମ୍ରାଜ୍ୟରେ !

ଯେଉଁଠାରେ ଜୀବନ ସଫଳ ଆନନ୍ଦମୟ ନୁହେଁ, ଯେଉଁଠାରେ ଜୀବନ ଆଉକିଛି କରିବାକୁ ସକ୍ଷମ ନୁହେଁ, ସେଠାରେ ଜୀବନ ଅବା କେଉଁ ଜୀବନ ! କାହିଁକି ସେଭଳି ଜୀବନଟିଏ ଢୁକ୍ ଢୁକ୍ କରି କେବଳ କାଛଘଣ୍ଟା ହୋଇ ଝୁଲି ରହିବାକୁ ଗ୍ରହିବ ?

ଜୀବନ ଏକ ଚଳମାନ ଧାରା, ଏକ ପ୍ରବହମାନ ନଦୀ । ଏଇ ଚଳ-ମାନତା ମଧ୍ୟରେ ସେ ହୁଏତ ଦିନେ ସମୁଦ୍ରରେ ପତିତ ହେବ, କିନ୍ତୁ ସମୁଦ୍ରରେ ପତିତ ହେବାପରେ ଯେଉଁ ଜୀବନ, ତା'ର ଲୀନ ହେବାର କ୍ରମକୁ ସ୍ୱୀକାର ନକରି, ଆପଣାର ସ୍ଥିତି ଏବଂ ବେଗ ଖୋଜିବସେ ସେ ପରିଣତ ବୟସରେ ମଧ୍ୟ ଅପରିପକ୍ୱ ନୁହେଁକି ?

ବଞ୍ଚିବାର ବୟସରୁ ଅବସର ବା ବାନପ୍ରସ୍ଥର ବୟସକୁ ହିସାବ କରିପାରୁନଥିବା ବ୍ୟକ୍ତି ଯଥାର୍ଥରେ ବୟସ ବଞ୍ଚିବା ଶିଖିନାହିଁ ବୋଲି ବୁଝିବାକୁ ହେବ ।

( ୮–୫–୮୫ )

# ମତେ ସସ୍‌ପେଣ୍ଡ୍ କର !

"ସସ୍‌ପେଣ୍ଡ ହେବା ମୋଟେ କୌଣସି ଦଣ୍ଡ ନୁହେଁ । ଓଲଟି ଯଥାଯଥ ବିଚାର ପର୍ଯ୍ୟନ୍ତ ଏହା ଏକ ମଧ୍ୟବର୍ତ୍ତିକାଳୀନ ଅବସ୍ଥା ମାତ୍ର । ତେଣୁ ଯଦିବା ମୁଁ ସସ୍‌ପେଣ୍ଡ ହେଲି, ସେଥିରେ ମୋର ଭାଙ୍ଗି ପଡ଼ିବାର କ'ଣ ଅଛି ? ଏବଂ ମୁଁ ଜାଣେ, ଏ ସସ୍‌ପେଣ୍ଡ ଅର୍ଡରକୁ କିପରି ପ୍ରତ୍ୟାହାର କରାଯାଇପାରେ"—ସଦ୍ୟ ପକେଟରୁ କାଢ଼ିଥିବା ପ୍ଲାଷ୍ଟିକ ପାନିଆଁରେ ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ବେପରବାୟ ଢଙ୍ଗରେ କହୁଥିଲେ ରଘୁନାଥ ବାବୁ ।

ଜଣା ପଡୁଥିଲା, ସସ୍‌ପେଣ୍ଡ ହୋଇ ମଧ୍ୟ ରଘୁନାଥ ବାବୁ ମୋଟେ ବିଚଳିତ ନୁହନ୍ତି । ସେଇଭଳି ନିର୍ବିକାର ଚିତ୍ତରେ ପାନ ଚୋବାଉଥିଲେ ସେ । ପେଟକୁ ଜାବୁଡ଼ି ଧରିବା ସାର୍ଟ ସବୁଦିନ ପରି ଲଚ୍ଚି ରହିଥିଲା ଦେହରେ । ଚଉକିରେ ବସିଲା ବେଳେ ଗୋଟିଏ ଗୋଡ଼କୁ ବସିବା ସ୍ଥାନ ଉପରକୁ ଟେକି ଅନ୍ୟଟିକୁ ତଳେରଖି ହଲଉ ହଲଉ ପୂର୍ବେ ଅଫିସରେ ଯେମିତି ଚାବିପେଟାରୁ ରୂପା ଦାନ୍ତଖୁଣ୍ଟା କାଢ଼ି ଦାନ୍ତ ଖୁଣ୍ଟନ୍ତି, ଏବେ ମଧ୍ୟ ପରମ ସନ୍ତୋଷରେ କରି ଚାଲିଥିଲେ ସେ ସେଇ କାର୍ଯ୍ୟଟି ।

ତାଙ୍କ ମତରେ ସସ୍‌ପେନ୍‌ସନ ଗୋଟିଏ ପ୍ରହସନ ମାତ୍ର । "ଆରେ ବାବୁ, ସସ୍‌ପେଣ୍ଡ ହୋଇ କେତେଜଣ ଲୋକ ଚାକିରି ହରେଇଲେଣି ? ଯେତେ ଗର୍ହିତ କାର୍ଯ୍ୟ ହୋଇଥିଲେ ମଧ୍ୟ ନେଇଆଣି ଥୋଇ ଜାଣିଲେ ସବୁ ସସ୍‌ପେନ୍‌ସନ ଅର୍ଡର ବାତିଲ । ଅମଙ୍ଗଳଭୟରେ ସସ୍‌ପେନ୍‌ସନକୁ ଡରି ହାଉଳି ଖାଇଲେ, କ'ଣ ଚଳିହୁଏ ? ଏଥିରେ ନିୟମ ହେଲା—ଭଲକରି ଖାଅ ଏବଂ ଖୁଆଅ ।"

ନିଜ କ୍ଷମତାର ଅପବ୍ୟବହାର କରି, ଅର୍ଥ ତୋଷରପାତ କରିଥିବାର ଅଭିଯୋଗରେ, ଏଇ ସାତମାସ ତଳେ ସସ୍‌ପେଣ୍ଡ ହୋଇଛନ୍ତି ଆମର ଆସିଷ୍ଟାଣ୍ଟ ଇଞ୍ଜିନିୟର ରଘୁନାଥ ବେହେରା । ଜଣେ କଣ୍ଟ୍ରାକ୍ଟରଙ୍କ ଠାରୁ ସିଧାସଳଖ ଲାଞ୍ଚ ନେଉଥିବା ଅଭିଯୋଗରେ ଧରା ପଡ଼ିଲେ ସେ । ତା'ପରେ କାଗଜପତ୍ର ତନଖି । ଆଳୁ ଖୋଳୁଖୋଳୁ ମହାଦେବ ବାହାରିଲେ ଶେଷକୁ । ଅତଏବ ଉପରୁ ହୁକୁମ ଆସିଲା : ଶ୍ରୀ ରଘୁନାଥ ବେହେରା ସସ୍‌ପେଣ୍ଡେଡ୍ ଅର୍ଥାତ ବର୍ତ୍ତମାନର ଆଫିସିକ ଓଡ଼ିଆ ପରିଭାଷା ଅନୁସାରେ ଶ୍ରୀ ରଘୁନାଥ ବେହେରା, ସହକାରୀ ନିର୍ବାହୀ ଯନ୍ତ୍ରୀ, ନିଲମ୍ବିତ । ତାଙ୍କଠାରୁ ବୃତ୍ତିଗତ ଅବଲମ୍ବନଟି ଛଡ଼େଇ ନିଆଗଲା । ଆଉ କିଏ ହୋଇଥିଲେ ମୁଣ୍ଡ ବାଡ଼େଇ– ଥାନ୍ତେ କି କ'ଣ, ଅଥଚ ଅର୍ଡ଼ର ପାଇ ରଘୁନାଥ ବାବୁ ଆମର ହାଇମାରିଲା ଭଳି ଅଳସ ସ୍ୱରରେ କହିଲେ– "ହଅ, ଷଣ୍ଢ ବେକରେ ପଘାପରି ଇଏ ଗୋଟେ କି ଡଗଣ !"

ଏଇଭଳି ନିଲମ୍ବିତ ହୋଇ ବା ଚାକିରିରୁ ଅନ୍ତର ହୋଇ ରଘୁନାଥ ବାବୁ ଘରକୁ ଫେରିଥିଲେ ଏବଂ ଏ ଭିତରେ ନିଜର ଗୁଜୁରାଣ ମେଣ୍ଟାଇବା ପାଇଁ ପୂର୍ବ ଚାକିରିଗତ ଅନୁଭୂତିକୁ ପୁଞ୍ଜିକରି ନିଜ ଗାଁଠାରୁ ବାରିପଦାଯାଏଁ ସେ ପକେଇଥିଲେ ଖଣ୍ଡିଏ ଯାତ୍ରିବାହୀ ବସ ଏବଂ ଭୁବନେଶ୍ୱରରେ ଆରମ୍ଭ କରି ଦେଇଥିଲେ ଖଣ୍ଡିଏ ସୁଲଭ ଶାଢ଼ୀଦୋକାନ । ପ୍ରଥମେ ପ୍ରଥମେ ବଡ଼ ଦିକ୍‌ଦାର ଲାଗୁଥିଲା ତାଙ୍କୁ ଏ ବ୍ୟବସାୟ । ହେଲେ ସେ ବସିବା ଲୋକ ନୁହନ୍ତି, ତାଙ୍କ ମୁଣ୍ଡ ଶୋଇ ରହିବା ମୁଣ୍ଡ ନୁହେଁ । ତେଣୁ ସେ ଏଇ ଅଳ୍ପ ସମୟ ଭିତରେ ନିଜର ବ୍ୟବସାୟଟିକୁ କରିସାରିଥିଲେ ସୁଦୃଢ଼ ।

ଢେର କିଛି ପକେଟରେ ପୂରେଇ ସସ୍‌ପେଣ୍ଡେଡ୍ ହୋଇଥିଲେ ରଘୁନାଥ ବାବୁ । ଓଦା ଚାକିରି ତାଙ୍କର, ଅତଏବ ସସ୍‌ପେଣ୍ଡେଡ୍ ହେଲେ ବୋଲି ସେ ଦୁଃଖ କରିନଥିଲେ ବେଶି । ହେଲେ ନଜାଣିବା ବନ୍ଧୁ ବାନ୍ଧବ ଗୁଡ଼ାକ ଦିନା କେତେ ତାଙ୍କୁ କଣୁଆ ଆଖିରେ ଚାହିଁଲେ । ସତେ ଯେମିତି ସେ କାହାକୁ ଗୋଟେ ଅଥାନ ଦେଖି ହାଣି ପକାଇଛନ୍ତି ! ମାତ୍ର ରଘୁନାଥ ବାବୁ ଛାଡ଼ିବା ଲୋକ ନୁହନ୍ତି । କଥା ପଡ଼ିବା ମାତ୍ରକେ ସେ ବୁଝେଇ ଦେଉଥିଲେ–ଚାକିରି କରି କିଏ ସସ୍‌ପେଣ୍ଡେଡ୍ ନ ହୁଏ ଏ ଦେଶରେ ! କୌଣସି ବିଚାର ପୂର୍ବରୁ ଏ ଗୋଟିଏ ଆଗୁଆ ବ୍ୟବସ୍ଥା କେବଳ । ରହ ଦେଖିବା ମୁଁ ପ୍ରମାଣ କରିଦେବି ଯେ ମୁଁ ପୁରା ନିର୍ଦ୍ଦୋଷ ।

ତିନି ବରଷ ଏଇଭଳି ସସ୍‌ପେଣ୍ଡେଡ୍ ହୋଇ ରହିଲେ ରଘୁନାଥବାବୁ । ଯେମିତି ଆମ ଦେଶରେ ଅଧିକାଂଶ ଓଭରସିୟର, କଣ୍ଡକ୍‌ଟର, ସପ୍ଲାଇ– ଇନସପେକ୍‌ଟର, ବି. ଡ଼ି. ଓ. ଓ ପୋଲିସ୍ ସବ-ଇନସପେକ୍‌ଟର ଇତ୍ୟାଦି ରହନ୍ତି । ପୁଣି ଚକଘୂରେ । ଶାସନ କଳରେ ଅଧିକ କିଛି ଗ୍ରିଜ ବା ତେଲ

ଦେଇଦେଲେ ଅଟକିଥିବା କଳ ପୁଣି ଗ୍ଳିବାକୁ ଆରମ୍ଭ କରେ । ସସ୍‌ପେନ୍-ସନ ଅର୍ଡର ଆପେ ଆପେ ପ୍ରତ୍ୟାହୃତ ହୋଇଯାଏ ଏବଂ ପୁନଃ ନିଯୁକ୍ତି ମିଳେ, ତିନି ଗ୍ରି ବରଷର ବକେୟା ଦରମା ଓ ପଦୋନ୍ନତି ସହ ।

ଏବେ ଅଳ୍ପ ଦିନ ତଳେ ସେହି ପୋଷ୍ଟରେ ରଘୁନାଥ ବାବୁଙ୍କ ପୂର୍ବରୁ ସସ୍‌ପେଣ୍ଡେଡ୍‌ ହୋଇଥିବା ଗୋବିନ୍ଦ ବାବୁ ତାଙ୍କ ବିଭାଗରେ ପୁଣି ହୋଇଛନ୍ତି ବହେଲ । ବକେୟା ଦରମା ବାବଦକୁ ପାଇଛନ୍ତି ୬୬ ହଜାର । ପଦୋନ୍ନତି ପାଇଁ ଏକଜିକ୍ୟୁଟିଭ ଇଞ୍ଜିନିୟର ହୋଇଛନ୍ତି ମଧ୍ୟ ।

ଏଭଳି ସସ୍‌ପେନସନ ଓ ପଦୋନ୍ନତି ଏବଂ ବୈଷୟିକ ଉନ୍ନତି ସମ୍ପର୍କରେ ଘଟଣାଟି ଶୁଣିବା ପରେ ଯେ କେହି ଗ୍ରକିରିଆ ହୁଏ ତ ଭାବୁଥିବେ ସସ୍‌ପେଣ୍ଡ ହେବା ଭଲ । କିନ୍ତୁ ପାଠକ ଜାଣିରଖିବା ଉଚିତ୍‌ ଯେଉଁ ଗ୍ରକିରି ଯେତେ ଓଦା ସେ ଗ୍ରକିରିରେ ସସ୍‌ପେନସନ ଜନିତ ପଞ୍ଚମରେ ବୃହସ୍ପତି ସେତେ ବେଶି ପ୍ରବଳ ।

ଅତଏବ ଆମେ ତୁମେ ଶୃଙ୍ଖିଳ ଖଡ଼ ଖଡ଼ ଗ୍ରକିରିର ଲୋକେ ସେଭଳି ଫନ୍ଦି ଫିକରକୁ ଭଜିବୁ କିଆଁ !!

(୧–୧୨–୮୫)

# କଡ଼ବୋଧର ଆକାଶ

ଶହେ ବର୍ଷ ତଳେ, ଭରତର କୌଣସି ଏକ ଗାଁମୁଣ୍ଡ ପୋଖରୀପାଖ ବରଗଛ ମୂଳେ ଜଣେ ଦେବତାଙ୍କ ସହିତ ଜଣେ ମଣିଷର ଭେଟ ହୋଇଥିଲା । ଦେବତା କହିଲେ କ'ଣ ମାଗୁଛ ମାଗ । ମଣିଷଟି ଟିକେ ଦବିଗଲା ପ୍ରଥମେ । ତା'ପରେ ଟିକେ ରହି ଉତ୍ତର ଦେଲା ମତେ ରଜା କରିଦିଅ ଠାକୁର ! ଦେବତା କହିଲେ, ରଜାହେଲେ କ'ଣ କରିବ ତୁମେ ? ମଣିଷ ଉତ୍ତର ଦେଇଥିଲା, ଖାଇବି, ପିଇବି, ମଉଜ ମଜ୍‌ଲିସ୍‌ରେ କାଳ କାଟିବି ପ୍ରଭୁ । ପାଦରେ ମୋର ଦାସଦାସୀ ଖଟୁଥିବେ; ଆଲଟ ଚାମରଧରି ଦେହସେବାରେ ଲାଗିଥିବେ, ରାଣୀ, ପାଟରାଣୀ । ଗଜଦନ୍ତ ପଲଙ୍କରେ ଶୋଇରହି ମୁଁ ଆଦେଶ କରିବି ମନ୍ତ୍ରୀ, କଟୁଆଳଙ୍କୁ !

ଦେବତା ପୁଣି ପଚାରିଲେ, ହେଲେ ପ୍ରଜାମାନଙ୍କ ପାଇଁ କ'ଣ କରିବ ତୁମେ ? ମଣିଷ, ହାତ ଉପରକୁ ଟେକି ଉତ୍ତର କଲା,– ମାହାପ୍ରଭୁ, ସବୁ ଗାଁରେ ପୋଖରୀ ଖୋଳେଇବି, ଦେଉଳ ବସେଇବି, ଅତିଥି ଅଭ୍ୟାଗତଙ୍କ ପାଇଁ ଖୋଲି ଦେବି ଧର୍ମଶାଳାମାନ । ସମସ୍ତ ପ୍ରଜାଙ୍କୁ ପୁଅପରି ପାଳିବି ହେ ଠାକୁର ! ଦେଶ ବିଦେଶରେ ମୋ ନାଁକୁ ମୁଣ୍ଡେଇ ଲୋକେ ଥେଇ ଥେଇ କରି ବୁଲିବେ ଯେମିତି !

ଦେବତା ମଣିଷକୁ ଅଭିଳଷିତ ବର ପ୍ରଦାନ କଲେକି ନାହିଁ କେଜାଣି ?

ଏବେ ଅଳ୍ପଦିନ ତଳେ ଗାଁ ମୁଣ୍ଡ ହାଇୱେ ଉପରେ ଦଦରା ସାଇକେଲଟିଏ ଚଢ଼ି ମଣିଷଟିଏ ଯାଉଥିଲାବେଳେ, ହଠାତ୍ ଜଣେ ଦେବତା ତା'କୁ ଆଗୁଆଳ କରି ଠିଆହେଲେ । ପଚାରିଲେ– ହେ ପ୍ରିୟ ମଣିଷ, କ'ଣ

ମାଗୁଛ ମାଗ । ଯାହା ଗୁହିଁବ ତାହା ଅବଶ୍ୟ ଦେବାକୁ ଆମ୍ଭେ ଚେଷ୍ଟିତ ହେବୁ ।

ସାଇକେଲରୁ ଅଧା ଓହ୍ଲାଉ ଓହ୍ଲାଉ ତରବର ହୋଇ ଉତ୍ତର କଲା ମଣିଷ— ମତେ ଦବ ଯଦି ଟଙ୍କା ଦିଅ । ଦେବତା ପଚାରିଲେ, କେତେ ଟଙ୍କା ? ମଣିଷ ଉତ୍ତର କଲା, ଦୁନିଆଯାକର ଯେତେ ଟଙ୍କା ଅଛି, ଦିଅ, ମୋ ଅଣ୍ଟିରେ ସବୁ ଅଜାଡ଼ି ଦିଅ ।

ଦେବତା ପୁଣି ପ୍ରଶ୍ନକଲେ— କ'ଣ କରିବ ଏତେ ଟଙ୍କା ? ମଣିଷଟି ହସିଲା, ଏ ପ୍ରଶ୍ନ ଶୁଣି । ରୂପାଟଙ୍କାପରି ଚକ୍ ଚକ୍ ହସ ହସିଲା ସେ । କହିଲା, ଟଙ୍କା ? ଟଙ୍କା ମୁହଁ କରିଦେବ ବଙ୍କା । ଟଙ୍କା ନେଲେ ମୁଁ ଗାଡ଼ି କିଣିବି, କୋଠା କିଣିବି, ଫାର୍ମ କରିବି, ଟି.ଭି କିଣିବି, ଫ୍ରିଜ୍ କିଣିବି, ଆଉ କେତେ କଣ କିଣିବି, ଏୟାର କଣ୍ଡିସନର ଲଗେଇ ଦେବି, କଳକାରଖାନାର ମାଲିକ ହେବି, ଇଲେକ୍‌ସନରେ ଲଢ଼ିବି, ଦେଶର ଶାସକ ହେବି, ଇଚ୍ଛାହେଲେ ଅନ୍ୟ ଦେଶର ଲୋକଙ୍କୁ କହିବି, ମୋ ନୀତିରେ ଚଳିବ ଯଦି ଚଳ ନ ହେଲେ ତମ ବେକମାନଙ୍କୁ ଆଣବିକ ସଣ୍ଡୁଆସିରେ ମୋଡ଼ିଦେବି । ଦୁନିଆଁଯାକରେ ମୁଁ ସବୁଠାରୁ ବଡ଼ଲୋକ ହେବି । ସାରା ପୃଥିବୀ କହିବ— ସିଏଟି ! ସିଏ ପରା ସିଏ । ମୁଁ ଦାନ୍ତ ଘଷୁଥିଲେ ବି ପୃଥିବୀର ସବୁଠାରୁ ସମ୍ଭ୍ରାନ୍ତ ପତ୍ରିକା ମୋର ରଙ୍ଗୀନ୍ ଫଟ ଛାପି ତଳେ ଟିପ୍‌ପଣୀ ଦେବ— ପୃଥିବୀର ବିଖ୍ୟାତ ଅମୁକ ମହାଶୟ, ଅମୁକ ତାରିଖଦିନ ଦିବା ଏତେଘଣ୍ଟା ଏତେ ମିନିଟ୍ ସମୟରେ ଦନ୍ତ ମଞ୍ଜନ କରିବାର ଦୃଶ୍ୟ ଇଏ ।

ଦେବତା, ମଣିଷର ଏଭଳି ବାକ୍‌ପଟୁତା ଦେଖି ଦବିଗଲେ 'ନିଶ୍ଚିତ । ତେଣୁ ସେ ଥରି ଥରି ପ୍ରଶ୍ନକଲେ— ମାତ୍ର ଭାଇ ମଣିଷ ! ତୁମେ ତୁମର ଜାତିଭାଇମାନଙ୍କ ପାଇଁ କ'ଣ କରିବ କହିଲ ନାହିଁ ତ ?

ମଣିଷ ଉତ୍ତରକଲା, କ'ଣ ଜାତିଭାଇ ? ସେମାନେ ତାଙ୍କ କଥା ବୁଝିବେ । ଆଜିକାଲି ଯୁଗରେ କାହାକୁ ବେଳ ଅଛି କାହା କଥା ବୁଝିବାକୁ ? ମତେ ଦୟାକରି ସେମାନଙ୍କ କଥା ପଚାର ନାହିଁ । ଏବେ ଲୋକଗୁଡ଼ାକ ବଡ଼ ଖରାପ ହୋଇଗଲେଣି । ସମସ୍ତେ ସମସ୍ତଙ୍କ ବିରୁଦ୍ଧରେ ଦିନରାତି ଲାଗିଛନ୍ତି କେମିତି ଜାଣିନାହାନ୍ତି ।

ଦେବତା ସବାଶେଷରେ ପଚାରି ଯାଉ ଯାଉ ପଚାରିଲେ—ଆଉ ତୁମ ଦେଶ ?

ମଣିଷ, ଡାହାଣ ହାତର ଦୁଇ ଆଙ୍ଗୁଠିରେ ଚୁଟ୍‌କିଟାଏ ମାରି କହିଲା, ମାର ଗୁଳି ହୋ ଦେଶକୁ । କୋଉ ଦେଶ କାହାର ? ମୋ ପୁଅଟି ପାଞ୍ଚଥରରେ କେତେ କଷ୍ଟକରି ବି. ଏ. ପାଶ୍‌କଲା, ଏ ଯାଏଁ ତାକୁ ଗୁକିରି ଖଣ୍ଡେ ମିଳିଲାନି । କାଇଁ, ଏମିତି ଦେଶଟା; ତାକୁ ଗୁକିରି ଖଣ୍ଡେ ଦେଇଦଉନି !

ହେଲେ ତମେ ବାବୁ ପଚ୍ଚୋଭଟ କୁଆଡ଼େ ? କହିଲ ଯଦି ଟଙ୍କା ନେଇଯାଅ, ନ ହେଲେ ବେକରେ ଗାମୁଛା ପକେଇ ଦେବି ।

ଦେବତା ସେଠାରୁ ଏକମୁହାଁ ଦଉଡ଼ି ପଳେଇଲେ । କାହିଁକି ପଳେଇଲେ । କେଜାଣି ?

ଦେବତା ଓ ମଣିଷ ଭିତରେ କଥୋପକଥନ ମାଧ୍ୟମରେ ସୂଚିତ ଏ ଶହେ ବର୍ଷର ମାନସିକ ବ୍ୟବଧାନଟି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ସମାଜବିତ୍‌ମାନେ ମଣିଷକୁ ଯେତେ ସାମାଜିକ ପ୍ରାଣୀ ବୋଲି ସଂଜ୍ଞାଦେଲେ ମଧ୍ୟ ଆଧୁନିକ କାଳରେ, ବିଜ୍ଞାନ ଏବଂ ଦ୍ରବ୍ୟବୋଧର ଦୁଇଟି ସବଳ ଡେଣାପାଇ ମଣିଷ, ଦିନକୁ ଦିନ ସାମାଜିକ ମଣିଷପଣିଆଁଠାରୁ ଦୂରେଇ ଯିବାକୁ ଯେ ଆରମ୍ଭ କରିଛି, ସେଥିରେ ସନ୍ଦେହ ନାହିଁ । ମଣିଷମାନଙ୍କର ଗହ ଗହମେଳରେ ରହିଲେ ମଧ୍ୟ ତା'ର ଦୃଷ୍ଟି ଆଉ ଭୂମି ସହିତ ସମାନ୍ତର ନୁହେଁ ଯେ ସେ ଅନ୍ୟର ମୁହଁକୁ ଦେଖିବାକୁ ସକ୍ଷମ ହେବ ଏଣିକି ।

ଆଧୁନିକ ମଣିଷର ଦୃଷ୍ଟି ଆଜି ଏକ ଊଲମ୍ବ ଦୃଷ୍ଟି । ଆଖି ଦୁଇଟି, ତାଳୁ ଉପରେ ଯେମିତି । ତା' ଆଗରେ କେବଳ ଆକାଶ । ଆକାଶର ଦ୍ରବ୍ୟପୂର୍ଣ୍ଣ ଇଙ୍ଗିତ ତା' ଆଖିରେ । ଯେତେ ଉପରକୁ ଉଠିଲେ ମଧ୍ୟ ସମସ୍ତ ଉଚ୍ଚତା ତା' ପାଇଁ ନିଅଣ୍ଟ । ନିଜକୁ, ମୁହଁ ବୁଲେଇ ଦେଖିବା ମଧ୍ୟ ତା' ପକ୍ଷରେ ସମ୍ଭବ ନୁହେଁ । ନା ଦେଖିବାକୁ ନିଜର ସାଙ୍ଗସାଥୀ ମେଳକୁ । ମଣିଷ ଭିତରେ ଥିବା ବ୍ୟକ୍ତିଟି ଆଜି ପ୍ରବଳଭାବରେ ଊର୍ଦ୍ଧ୍ୱମୁଖ ଆକାଶକୁ ଗ୍ରହିବାର ଉତ୍ତରଣ, ଆଧ୍ୟାତ୍ମିକ ହୋଇଥିଲେ ଅବା ମଣିଷ ଗୁଡ଼ିକ ଯୋଗୀ କିମ୍ବା ଋଷି ପାଲଟି ଯାଆନ୍ତେ; କିନ୍ତୁ ହାୟ ! ସେମାନଙ୍କ ଆକାଶରେ, ଚନ୍ଦ୍ର ସୂର୍ଯ୍ୟ ଗ୍ରହତାରାଙ୍କ ବଦଳରେ କେବଳ ଟଙ୍କା ପଇସା, ବ୍ୟାଙ୍କ୍ ବାଲାନ୍‌ସର ଫର୍ଦ୍ଦ ଫର୍ଦ୍ଦ ବହଳ ରଙ୍ଗ । ଆଶାବାରୀ ସିଞ୍ଚିବାର ମେଘମାଳା ବଦଳରେ ଆଜି, ପ୍ରତିଟି ବ୍ୟକ୍ତିର ଆକାଶରେ; ଗାଡ଼ି ମଟର, କୋଠା, ବାଡ଼ି, ଟି.ଭି. ଫ୍ରିଜ୍, ବୈଜ୍ଞାନିକ ଯନ୍ତ୍ରପାତି ଆଦିର ଧାଡ଼ିଧାଡ଼ି ମେଘଖଣ୍ଡମାନ ।

ଦ୍ରବ୍ୟମାନେ ଘେରିଛନ୍ତି ଯେମିତି ମଣିଷକୁ । ଜଡ଼ବୋଧର ବଳୟରେ ବୁଡ଼ି ରହିଛି ମଣିଷ । ଗୋଟିଏ; ଗୋଟିଏ ପରେ ଗୋଟିଏ ଆବଶ୍ୟକତା ଓ ଅନାବଶ୍ୟକତା ଭିତରେ ଥିବା ମାନବିକ ବୁଝାମଣାଟି ହଠାତ୍ କାଢ଼ି-ନେଇଛି ନିଷ୍ଠେ ଏ ଜଡ଼ବୋଧ । ପ୍ରତିଟି ପଦାର୍ଥକୁ ମଣିଷ ଅତ୍ୟାବଶ୍ୟକ ମଣୁଛି ବେଳୁବେଳ ।

ମୋର ଏଇଟା ନାହିଁ କହି ଚିତ୍କାର କରୁଛି ପ୍ରତିଟି ସଭ୍ୟ ମଣିଷ । ମୋର ଏଇଟା ନାହିଁ ଏଇଟା ନାହିଁ ବୋଲି ଚିତ୍କାର କରୁଛି ପ୍ରତିଟି ସଭ୍ୟଦେଶ ।

କାହାକୁ ଯୁଦ୍ଧାସ୍ତ୍ରର ଦାରିଦ୍ର୍ୟ; କାହାକୁ ଆଣବିକ ଇନ୍ଧନର ଦାରିଦ୍ର୍ୟ; କାହାକୁ ବାସ୍ନାତେଲର ଦାରିଦ୍ର୍ୟ; କାହାକୁ ବିଦେଶୀ ମଦର ଦାରିଦ୍ର୍ୟ । ମଣିଷ ଓ ଦେଶ ଦରିଦ୍ରରୁ ଦରିଦ୍ରତର ହେଉଛନ୍ତି ପ୍ରତିଟି କୃତ୍ରିମ ନୂଆ ଆବଶ୍ୟକତାରେ । ମଣିଷ, ମଣିଷ ହେବାକୁ ସୁଯୋଗ କାଇଁ ଏ ଜଡ଼ବୋଧର ଭିଡ଼ ଭିତରେ !

ସେଥିପାଇଁ ଶାସ୍ତ୍ରରେ ଅଛି, ଯାହାର ଯେତେ ପଦାର୍ଥଲୋଭ, ସେ ସେତେ କମ୍ ମଣିଷ; ଯିଏ ଯେତେ କମ୍ ମାନବିକ, ତା'ର ସେତେ ବେଶି ପଦାର୍ଥବୋଧ ।

(୧୫-୫-୮୫)

# ବଉଳ ମକର ଆମ୍ବକଷି

ସବୁକଥା ଶୁଣି ସାରିବା ପରେ, ତାଙ୍କରି ନାଁଟି ଉଚ୍ଚାରିତ ହେବାମାତ୍ରେ ଶ୍ରୀମତୀ ଆଗ୍ରୱାଲ ଆଖି ଡବ ଡବ କରି ଜିଭ କାମୁଡ଼ି କହିଲେ—"କାହା କଥା କହୁଛ ? ସେପରା ମୋ ବଉଳ ! ମୁଁ ଭାବିଲି ଆଉ କାହା କଥା କହୁଚ ବୋଲି ! ଆମରି ଗାଁର ପରା ସିଏ ; ଗ୍ରହକୁ ଗ୍ରହ ଲାଗିଛି । ପିଲାଦିନେ ସାଙ୍ଗରେ ଏକା ସ୍କୁଲରେ ପଢ଼ୁଥିଲୁ, ଏକା ସାର୍‌ଙ୍କ ପାଖରେ ଟିଉସନ୍‌ବି । ତାଙ୍କ ଉପର ହୋଇଥିଲା ଆମର ନାଁ । ସବୁବେଳେ କ୍ଲାସରେ ଏକାଠି ବସିବାକୁ ମଧ୍ୟ ହାଇଁପାଇଁ । ଥରେ କ'ଣ ହେଇଚିନା, ଦିଦି କ୍ଲାସରେ କହିଲେ ମତେ ପଛ ଧାଡ଼ିରେ ବସିବାକୁ । ବଉଳ ବସିଲେ ଆଗ ଧାଡ଼ିରେ । କେତେ କାନ୍ଦିଚି ମୁଁ ସେଦିନ ! କୁଆଡ଼େ ଗଲଣି ସେ ଦିନ—ସବୁ । ଆମେ ଭାବୁଥିଲୁ କେବେ ଅଲଗା ହେବୁନି ଦୁହେଁ । ଏକାଠି କେତେ ସୁଖ ଦୁଃଖରେ କାଳ କଟିଚି । ଅଥଚ ତିନି ଚାରିବରଷ ହେବ, ବଉଳଙ୍କର ମୁଁ କିଛି ଖବର ପାଇ ନଥିଲି ।

ସେ କ'ଣ ତେବେ କଟକକୁ ବଦଳି ହୋଇ ଆସିଲେଣି ? ତାଙ୍କ ବଡ଼ ପୁଅର କ'ଣ ଚାକିରି ହୋଇଯାଇଥିଲା ବୋଲି ଶୁଣିଥିଲି । କେମିତି ଅଛନ୍ତି ସେମାନେ ? ହଉ ତେବେ ତା'ଙ୍କୁ କହିଦେବ—ତୁମ ବଉଳ ତୁମକୁ ବହୁତ ବହୁତ କରି କହିଛନ୍ତି ।"

ଶ୍ରୀମତୀ ମଞ୍ଜରୀ ଦେବୀଙ୍କର ନାଁ ଶୁଣୁ ଶୁଣୁ ସେଦିନ ଶ୍ରୀମତୀ ଅଞ୍ଜନା ଆଗ୍ରୱାଲ ପ୍ରକୃତରେ ଖୁସି ହୋଇ ନାଚି ଯାଇଥିଲେ ପରସ୍ତେ ।

ପିଲାଦିନେ ତା'ଙ୍କ ଗାଁରେ ତାଙ୍କର ସାଙ୍ଗସାଥୀ ହୋଇ ହୁଏତ

ଅନେକଗୁଡ଼ିଏ ଥିଲେ, କିନ୍ତୁ ଅତ୍ୟନ୍ତ ଅନ୍ତରଙ୍ଗ-ଭାବ ହେତୁ ଉଭୟେ ବସି-ଥିଲେ 'ବଉଳ' । ଦୁଇଟି ଜୀବନର ଆନ୍ତରିକ ପରିଚୟକୁ ଏକତ୍ର ଦେବା-ପାଇଁ 'ବଉଳ'କୁ କରାଯାଇଥିଲା ପ୍ରତିନିଧି ।

ଏଇ ଅନ୍ତରଙ୍ଗତା, ଏବେ ମଧ୍ୟ ମଞ୍ଜରୀ ଦେବୀ ଓ ଅଞ୍ଜନା ଦେବୀଙ୍କ ଭିତରେ ବଉଳ ଫୁଲ ପରି ମହକପୂର୍ଣ୍ଣ । ପ୍ରୌଢ଼ତ୍ୱର ଛାଇ ଆବ-ରଣ ଭିତରେବି ମନେ ପଡ଼ୁଚି ସେମାନଙ୍କର "ବଉଳ ।"

ଅତୀତ କାଳରୁ ଓଡ଼ିଶାର ପୁରପଲ୍ଲୀରେ ଉଭୟ ବାଳକ ବାଳିକା ଓ ସ୍ତ୍ରୀ ପୁରୁଷମାନେ ନିଜ ନିଜ ଭିତରେ ଥିବା ବନ୍ଧୁତ୍ୱକୁ ଅଧିକ ପ୍ରାଣବନ୍ତ କରିବାପାଇଁ ଗ୍ରହଣ କରୁଥିଲେ ଗୋଟିଏ ଗୋଟିଏ ଉପଲକ୍ଷ । ତା'କୁ ଅମୁକ ବସିବା ବୋଲି କୁହାଯାଉଥିଲା ବ୍ୟାବହାରିକ ଭାଷାରେ । ଦୁଇ ବନ୍ଧୁ ବା ଦୁଇ ବାନ୍ଧବୀ ନିଜ ଅନ୍ତରଙ୍ଗତାର ପରିଚୟ ସ୍ୱରୂପ ନିଜ ନିଜର ଉଚ୍ଚା-ରଣ ନ କରି ସଙ୍ଗାତ ବା ମଇତ୍ର (ମିତ) ବସୁଥିଲେ । ଥରେ ସଙ୍ଗାତ ବା ମିତ ବସିସାରିଲା ପରେ ନାଁ ଧରି ଉଚ୍ଚାରଣ କରିବା ଯେମିତି ଥିଲା ବନ୍ଧୁତା ପ୍ରତି ଅପମାନ । ତେଣୁ ଆଜୀବନ ସେମାନେ ପରସ୍ପରକୁ ଡାକୁଥିଲେ ସଙ୍ଗାତ କିମ୍ବା ମିତ ।

ଏ ସଙ୍ଗାତ ବା ମିତ ବସିବାର ଅନୁଷ୍ଠାନ ରୂପ ନେଇଥିଲା ଏକ ଧାର୍ମିକ ପରମ୍ପରାରେ । ଏଥିପାଇଁ ଠାକୁରଙ୍କୁ ସାକ୍ଷୀ ରଖିବାକୁ ପଡ଼ୁଥିଲା । ଉଭୟେ ଉଭୟଙ୍କୁ ନୂତନ ବସ୍ତ୍ର ଦେବାଠାରୁ ଆରମ୍ଭ କରି ବିଭିନ୍ନ ଉପହାର ଆଦାନ ପ୍ରଦାନ କରିବାର ବିଧି ଥିଲା ଅତ୍ୟନ୍ତ ସାଧାରଣ । କହିବା ବାହୁଲ୍ୟ, ଦୁଇଟି ଜୀବନର ଏଇ ବନ୍ଧୁତ୍ୱ ସହିତ ଚିରଦିନ ଧରି ଦୁଇଟି ପରିବାର ବାନ୍ଧି-ହୋଇ ରହୁଥିଲା ମମତାର ମାର୍ମିକ ହୃଦ ବନ୍ଧନରେ ।

ବହୁ ପୁରାକାଳରୁ ବିଭିନ୍ନ କାହାଣୀ ଓ ଉପାଖ୍ୟାନ ମଧ୍ୟରେ ମଣିଷ ମଣିଷ ସହିତ ଏଇ ସମ୍ପର୍କ ସୃଷ୍ଟିର ଚଳଣି, ଆମ ଆଗରେ ଏବେ ବି ପ୍ରାଞ୍ଜଳ ।

କେବେ ଦିନେ ରଜାପୁଅ ଯାଉଥିଲେ ପକ୍ଷୀରାଜ ଘୋଡ଼ାରେ । ବାଟରେ ଦେଖିଲେ ଭୈରବ ଚଢ଼େଇର ଛୁଆଙ୍କୁ ବିପତ୍ତି ପଡ଼ିଚି । ଅଜଗର ସାପ ଗଛ ଉପରକୁ ଉଠୁଚି, ଚଢ଼େଇ ଶାବକଙ୍କୁ ଗିଳିବାକୁ । ରଜାପୁଅ, ବାରହାତ ଖଣ୍ଡା ଉଞ୍ଚେଇ ସାପକୁ ଦିଗଡ଼ କରିଦେଲେ ନିମିଷକେ । ଭୈରବ ଚଢ଼େଇ ପହଞ୍ଚି କହିଲା—ତମେ ଆଜିଠାରୁ ମୋର ସଙ୍ଗାତ ହେଲ । ତୁମ ସୁଖ ଦୁଃଖକୁ ମୁଁ ମୁଣ୍ଡ ବିକିଲି ।

ରଜାପୁଅ, ମନ୍ତ୍ରୀପୁଅ ଓ କଟୁଆଳପୁଅ ପାରିଧିକି ଯାଇ ବାଟଭୁଲି ଜଙ୍ଗଲର କେଉଁ କାଚକେନ୍ଦୁ ପୋଖରୀ କୂଳରେ ହୋଇଛନ୍ତି । ଅସୁର ଆସି

ମଣ୍ଡାପୁଅକୁ ଘୋଡ଼ାଆଡ଼୍ ଧରିଚି । କଟୁଆଳପୁଅ ଜୀବନକୁ ପାଣିଛଡ଼େଇ ଖଣ୍ଡାରେ ମାରିଚି ସେଟ । ଅସୁର, ଅଢ଼େଇ ହାତର ଜିଭଟିଏ କାଢ଼ି ଖତମ୍ । ସେଇଦିନୁ ମଣ୍ଡାପୁଅ, କଟୁଆଳପୁଅ ମିତ ବସିଛନ୍ତି । ସେଇଦିନୁ ବନ୍ଧୁତାରେ ଘୁନାଗଣ୍ଠି ପଡ଼ିଲା ଯେମିତି ।

କାଳିଦାସଙ୍କର 'ସସେମିରା' ଉପାଖ୍ୟାନରେ ମଣିଷ, ଭାଲୁ ସହିତ ସଙ୍ଗାତ ବସିଚି । ମଣିଷ ଶେଷରେ ବିଶ୍ୱାସ ଘାତକତା କରିଚି ପଶୁପାଖରେ ଏବଂ ପରିଣାମରେ ପାଲଟିଚି ବୋବା ।

ଏଇଭଳି ବହୁ କାହାଣୀ ଓ କିମ୍ବଦନ୍ତୀ ମାଧ୍ୟମରେ ଏଇ ସମ୍ପର୍କ ନିଯୋଗର ଇତିହାସ ଆମ ସଂସ୍କୃତି ସହ ଅତିମାତ୍ରାରେ ଜଡ଼ିତ । ଏ ପରମ୍ପରା ଏବେ ମଧ୍ୟ ଓଡ଼ିଶାର ପୁରପଲ୍ଲୀରେ ଅତଳା ବିଶ୍ୱାସପରି ପ୍ରବହମାନ । ମାତ୍ର ଏ ପରମ୍ପରା ଯେ ଦିନୁଦିନ ଅପସୃୟମାଣ ସେ କଥା ନିଶ୍ଚିତ ।

ସଙ୍ଗାତ,ମଇତ୍ର, ବଉଳ, ମକର, ଆମ୍ବକଷି ଓ ମାହାର୍ଦ୍ଦ ଆଦି ଅନେକ ନାମକୁ ମାଧ୍ୟମକରି ସମ୍ପର୍କର ସଂଯୋଜନା ହେଉଥିଲା ମଣିଷ ମଣିଷ ଭିତରେ । ସ୍ଥଳବିଶେଷରେ ରକ୍ତର ବହଳତାଠାରୁ ଆହୁରି ବହଳ ହେଉଥିଲା ଏ ନାମସମ୍ପର୍କର ରଙ୍ଗ । ଏପରିକି ଯେକୌଣସି ଏକ ପ୍ରିୟ ନାମକୁ ମାଧ୍ୟମ କରି ବନ୍ଧୁତାକୁ ଯୋଡ଼ା ଯିବାରୁ ନମୁନା ମିଳୁଥିଲା ଅନେକ କ୍ଷେତ୍ରରେ । ଅଳ୍ପ ବୟସର ପିଲା, ବିଶେଷକରି ଝିଅପିଲାମାନେ ନିଜ ନିଜ ଭିତରେ ଏଭଳି ନାମ ସଂଯୋଗରେ ଯେ ଅଧିକ ଆନନ୍ଦଲାଭ କରନ୍ତି, ତାହା ଏବେ ମଧ୍ୟ ଗାଁ ଗହଳରେ ଯେ କେହି ଅନୁଭବ କରିବା ମୋଟେ ବିଚିତ୍ର ନୁହେଁ । କେହି ଭଲପାଇବାର ଚିହ୍ନସ୍ୱରୂପ କାହା ସହିତ 'ଚକୋଲେଟ୍' ବସିଜାଣିତ, କେହି 'ପପିନ୍‌ସ' । ସମ୍ପର୍କର ନିବିଡ଼ ବନ୍ଧନ ପାଇଁ ବାପାମାଆ ଦେଇଥିବା ନାଁଗୁଡ଼ିକ ଯଥେଷ୍ଟ ନୁହେଁ ଯେମିତି ।

କିନ୍ତୁ ଏଭଳି ସଂଯୋଗର ମାଳାଗୁଡ଼ିକ ଆଉ କେତେ ଦିନ ବା ସମାଜର ଗ୍ରୀବାବେଷ୍ଟନ କରିବ ! ବେଳୁବେଳ ଗାଁ ଗହଳରୁ ଏ ସଙ୍ଗାତ ମଇତ୍ରର ଆପଣାପଣ ପତଳା ହେବାକୁ ଆରମ୍ଭ କରିଚି ଦ୍ରୁତ ଗତିରେ । ସହରର ପଡ଼ୋଶୀ ପଡ଼ୋଶୀ ଦୂରତ୍ୱପରି ଗାଁର ଦୋସମାଜୀ କାନ୍ଥମାନଙ୍କରେ ମଧ୍ୟ ଦୂରତ୍ୱର ପାଳଭୂତ ଝୁଲିବାକୁ ଆରମ୍ଭ କରିଚି ଏବେ । ମଣିଷ, ମଣିଷଠାରୁ ଦିନୁଦିନ ବ୍ୟବଧାନରେ ସଭ୍ୟହେବା ପାଇଁ ପ୍ରମତ୍ତ । ସଙ୍ଗାତ, ମଇତ୍ର, ବଉଳ, ମକର ଓ ଆମ୍ବକଷି ଆଦିର ଭାବ ଘନ ମହକକୁ ହେୟକରି, ମଣିଷ ନିଜକୁ ଆଧୁନିକ ବୋଲି ଜାହିର କରୁଚି ଆଜି ।

ଗାଁ ଗହଳରେ ଆଉ କେହି ସଙ୍ଗାତ ବସିବାକୁ ଆଗ୍ରହୀ ନୁହନ୍ତି । ସରଳ ସହଜ ଜୀବନ ସହିତ ମଣିଷ ଆଉ ନିଜକୁ ବାନ୍ଧିବାକୁ ଇଚ୍ଛୁକ

ନୁହେଁ ବୋଧେ । ସମ୍ପର୍କର ଭାବପ୍ରବଣତାଠାରୁ ବ୍ୟକ୍ତି—ଜୀବନର ଏକାକିତ୍ୱ ଆଧୁନିକ ମଣିଷର ଅଧିକ ପ୍ରିୟ ହୋଇଛି ବୋଲି, ଏସବୁ ପ୍ରମାଣ କରୁଚି ନିଶ୍ଚୟ । ସହରୀ ସଭ୍ୟ ଜୀବନରେ, ବଉଳ, ମକର, ଆମ୍ବକଷି-ଭଳି ଗାଉଁଲୀ ମନୋଭାବକୁ କିଏ ସ୍ଥାନ ଦିଅନ୍ତା ସତରେ !

ମଞ୍ଜରୀ ଦେବୀ ଓ ଅଞ୍ଜନା ଦେବୀ ବଉଳ ବଉଳ କହି କୁଣ୍ଢାକୁଣ୍ଢି ହେଉଛନ୍ତି । ଅଥଚ ତାଙ୍କରି ପିଲାମାନେ ନାକରେ ଆଙ୍ଗୁଠି ଦେଇ ହସୁଛନ୍ତି—ଧେତ୍ ! ଆମ ବୋଉଗୁଡ଼ାକ ସବୁ ମଫସଲି !!

( ୨୨ । ୫ । ୮୫)

# ରାଘବ ଓ ରାଜନୀତି

"ରାଜନୀତି କ'ଣ ଗୋଟେ ଭଲ କଥା ! ସେଥିରୁ ଆମକୁ କି ମିଳେ ! ଯାହା କହନ୍ତୁ ପଛେ ଆଜ୍ଞା, ରାଘବକୁ ମୁଁ ସେଥିରେ ପଶିବାକୁ ଦେବିନାହିଁ କେବେ । ଆମେ କିଏ, ସେ ରାଜନୀତି କିଏ ? ଆମର ସେଥିରେ ଯାଏ ଆସେ କେତେ ! ରାଘବ ସେଠିକି ପାଠ ପଢ଼ିବ ବୋଲି ଯାଇଛି ନା ରାଜନୀତି କରିବ ବୋଲି ଯାଇଛି ।"

ବିଶ୍ୱବିଦ୍ୟାଳୟରେ ପାଠ ପଢୁଥିବା ମେଧାବୀ ଛାତ୍ର ରାଘବ, ଛାତ୍ର ସଂସଦର ସଭାପତି ପଦ ପାଇଁ ପ୍ରାର୍ଥୀ ହେବାର ଶୁଣି, ରାଘବର ପିତା ସେକ୍ରେଟେରିଏଟ୍‌ର ବଡ଼ବାବୁ, ଶ୍ରୀ କେଳୁଚରଣ ମହାନ୍ତିଙ୍କର ଏହା ଥିଲା ସେଦିନର ସ୍ୱାଭାବିକ ଉତ୍ତର ! ପୁଅଯେ ତା'ଙ୍କର ଏଇମିତି କଲେଜ ନିର୍ବା-ଚନରେ ଠିଆ ହେଉ ହେଉ ଦିନେ ରାଜନୀତିରେ ମୁଣ୍ଡ ଗଳେଇଦବ ଏଇ ଥିଲା ତା'ଙ୍କର ସବୁଠାରୁ ବଡ଼ ଡର ।

ରାଘବ ବୁଦ୍ଧିମାନ । ମେଧାବୀ । ସୁସଙ୍ଗଠକ ଏବଂ ନୀତିବାନ ପିଲା । ଭଲ ପଢ଼େ, ଭଲ ବକ୍ତୃତା କରେ ବୋଲି ତା'ର ବିଶ୍ୱବିଦ୍ୟାଳୟରେ ଭଲ ନାଁ । କେଳୁଚରଣଙ୍କର ଇଚ୍ଛା ପୁଅ ତା'ଙ୍କର ପାଠ ପଢ଼ି ବଡ଼ ଚାକିରି-ଟିଏ କରୁ । ଅତଏବ ଏକ ପ୍ରାଞ୍ଜଳ ଭବିଷ୍ୟତର ଫାଟକ ପାଖରେ ପହଞ୍ଚୁଥିବା ପୁଅ ରାଜନୀତିରେ ମୁଣ୍ଡ ଖେଳାଉଛି ଶୁଣି ତାଙ୍କର ଏପରି ପ୍ରତିକୂଳ ପ୍ରତିକ୍ରିୟା ହେବା ହୁଏତ ସ୍ୱାଭାବିକ । କିଏ ପ୍ରକୃତରେ ବାପ ହୋଇ ସହିବ, ପୁଅର ଏଭଳି ଜୀବନ- ବରବାଦୀ କାର୍ଯ୍ୟକୁ !

ଆଜି କୌଣସି ହିତାକାଙ୍କ୍ଷୀ ଅଭିଭାବକ ଚାହେଁନା ଯେ ମେଧାବୀ ଶିକ୍ଷିତ ଯୁବକଟିଏ ରାଜନୀତିରେ ପଶୁ । ରାଜନୀତିରେ ପ୍ରବେଶ ଯେମିତି ତା'ର ଶିକ୍ଷା ପ୍ରତି ଅପମାନ ! ତା'ର ମଣିଷପଣିଆଁ ପ୍ରତି ଅପମାନ ! ରାଜନୀତି ସହିତ ସାଧାରଣ ମଣିଷର କିବା ସମ୍ପର୍କ ! ସେଥିରେ ପଶି ଯିଏ ଇଟପଟ ହେଉଚି ହେଉ, ଆମେ ଭଦ୍ରଲୋକଗୁଡ଼ାକ ସେଥିରେ ପଶିବା ପ୍ରକୃତରେ କ'ଣ ଉଚିତ୍ ! ତେଣୁ ଅନ୍ୟର ଯୁକ୍ତି ଆମକୁ ଅପାଠୋ ଅଶିକ୍ଷିତ ଲୋକ ଶାସନ କରୁ ପଛେ, ଆମେ କିନ୍ତୁ ଭଦ୍ରଲୋକ ସାଜି କେବଳ ଖବର କାଗଜ ପଢ଼ିବୁ ।

ରାଜନୀତି ସାଧାରଣରେ ମତାମତ ଯେ 'ଭଲ' ନୁହେଁ, ଏ କଥା ଯେକେହି ଅନୁଭବ କରିପାରିବ ଆମ ଦେଶରେ । ଆମ ବିଚାରରେ ରାଜନୀତି ଟାଉଟରୀ ବା ଧପ୍‌ପାବାଜୀ ସହ ସମାନ । ତା' ସହିତ ଭଦ୍ର ଜୀବନର କୌଣସି ସାଦୃଶ୍ୟ ନାହିଁ । ରାଜନୀତି ସମ୍ପର୍କରେ କାରବାର ଯେମିତି ଇତର ଦେଶବାସୀଙ୍କର କାମ । ଅତଏବ ଭଦ୍ର ଶିକ୍ଷିତ ପରିବାରମାନଙ୍କରେ ସେ ବିଷୟରେ ଆଲୋଚନାର ସ୍ଥାନ ନାହିଁ ।

ତେଣୁ କେଳୁ ଚରଣ ମହାନ୍ତି, ହଲପ୍ କରି ଶପଥ ନେଇଛନ୍ତି— ଯାହାହେଉ ପଛେ, ସେ ରାଘବକୁ ରାଜନୀତିରେ ପଶିବାକୁ ଦେବେନି ।

ରାଜ୍ୟ ବା ରାଷ୍ଟ୍ର ସମ୍ପର୍କିତ ନୀତି ହିଁ ରାଜନୀତି । ରାଷ୍ଟ୍ରର ପରିଚାଳନାର ଅନ୍ତର୍ଭୁକ୍ତ ପ୍ରତ୍ୟେକ ବିଷୟବସ୍ତୁ ଏହାର ପରିସରଭୁକ୍ତ । ଅତୀତରେ ରାଜତନ୍ତ୍ର ଶାସନରେ, ଏ ନୀତି ସମୂହର ଏକମାତ୍ର ନିୟାମକ ହୁଏତ ଥିଲେ ରାଜା । ରାଜାଙ୍କ ଉପରେ ଦେଶର ଭଲମନ୍ଦସବୁ ଛାଡ଼ିଦେଇ, ପ୍ରଜାଏ କେବଳ ଶାସିତର ନାମଫଳକକୁ ହୃଦୟରେ ବାନ୍ଧି କାଳକାଟିବାକୁ ପସନ୍ଦ କରୁଥିଲେ ସେତେବେଳେ । ରାଜାଙ୍କର କୋରଡ଼ାଠାରୁ ଆରମ୍ଭ କରି କଣେଇ ଚାହାଣୀ ପର୍ଯ୍ୟନ୍ତ ପ୍ରତିଟି ଖିଆଲକୁ ଗଙ୍ଗାଜଳ କରି ନିର୍ବିକାରରେ ପ୍ରଜାମାନେ ଧର୍ମଭାବି ଆଚମନ କରୁଥିଲେ ଦିନେ ।

ମାତ୍ର ଯୁଗ ବଦଳିଲା । ମଣିଷ ଜାଣିଲା, ଏ ଶାସକ ବା ରାଜାଟି ମନକୁ ମନ ଆମ ଉପରେ ଲଦିହୋଇ ପଡ଼ିବା ଉଚିତ୍ ନୁହେଁ । ଏଣିକି ଆମେ ନିଜେ ଆମର ଶାସକ ବାଛିବୁ । ପ୍ରଜାଏ ବାଛିବେ ତାଙ୍କରି ଭିତରୁ ଜଣକୁ । ଯିଏକି ଗଣତରଫରୁ ଶାସନକୁ ସମ୍ଭାଳିବ । ଶାସନ ଦଣ୍ଡମୂଳକ ନ ହୋଇ ହେବ କଲ୍ୟାଣମୂଳକ । ସରକାର ଆଉ ଏଣିକି କେଉଁ ବ୍ୟକ୍ତିବିଶେଷର ଖିଆଲ ଖେଳ ନ ହୋଇ କାର୍ଯ୍ୟକରିବ ଗଣସମୂହର ବିଶ୍ୱସ୍ତରୂପେ ।

ଫଳରେ ରାଜନୀତି ବା ରାଷ୍ଟ୍ରନୀତି ଏଣିକି ରାଜାଙ୍କର ନୀତି ନ ହୋଇ ରାଷ୍ଟ୍ରନୀତି ବା ଗଣଙ୍କର ନୀତିରେ ପରିଣତ ହୋଇଛି । ସେଇ

କାରଣରୁ ଗଣତନ୍ତ୍ର ଶାସନରେ ସରକାର ଏକ ସାମୂହିକ ଏବଂ ସାମାଜିକ ବ୍ୟାପାର ମାତ୍ର କର୍ମ ନକାଳେ ବ୍ୟକ୍ତିଗତ ବ୍ୟାପାର ନୁହେଁ । ତେଣୁ ଦେଶର ପ୍ରତ୍ୟେକ ଶିକ୍ଷିତ ଚିନ୍ତାଶୀଳ ନାଗରିକଠାରୁ ଆରମ୍ଭ କରି ସାଧାରଣ ନାଗରିକ ପର୍ଯ୍ୟନ୍ତ ଦେଶର ରାଜନୀତି ସମ୍ପର୍କରେ ସମସ୍ତେ ସମ୍ୟକ୍ରୂପେ ସଚେତନ ରହିବା ଏକାନ୍ତ ଅପରିହାର୍ଯ୍ୟ ନୁହେଁ କି ?

ପ୍ରଚଳିତ ସାର୍ବଜନୀନ ସାବାଳକ ଭୋଟପ୍ରଥା ଅନୁସାରେ ପ୍ରତ୍ୟେକ ଲୋକ ସରକାର ଗଠନ ଦିଗରେ ପ୍ରତିନିଧି ବାଛିଲା ବେଳେ ନିଜର ମତବ୍ୟକ୍ତ କରନ୍ତି । ମାତ୍ର ରାଷ୍ଟ୍ରର ରୀତିନୀତି ସମ୍ପର୍କରେ ନିସ୍ପୃହ ବା ଅଜ୍ଞ ଥିବା ନାଗରିକମାନଙ୍କର ମତକୁ ନେଇ ଯେଉଁ ସରକାର ପ୍ରତିଷ୍ଠିତ ହୁଏ, ତାହା କେତେ ଅନୁପାତରେ ଗଣତନ୍ତ୍ର ସେ କଥା ବିଚାରକରିବା ବିଧେୟ ।

ଆମ ଦେଶରେ ଶତକଡ଼ା ତିନି ଭାଗରୁ ଚାରିଭାଗ ଶିକ୍ଷିତ ଲୋକ ସାଧାରଣ ନିର୍ବାଚନମାନଙ୍କରେ ଭୋଟ ଦାନ କରନ୍ତି । ଶତକଡ଼ା ଶହେରୁ ପ୍ରାୟ ଯେଉଁ ପଇଁଚାଳିଶ ଭାଗ ଲୋକ ଭୋଟ ଦିଅନ୍ତି, ସେମାନଙ୍କ ଭିତରୁ ଦେଶ, ରାଜନୀତି ଓ ରାଜନୈତିକ ଆଦର୍ଶ ଆଦି ବିଷୟରେ ମୋଟେ ଧାରଣା ନଥିବା ଭୋଟଦାତାଙ୍କର ଅନୁପାତ ପାଖାପାଖି ବତିଶ ଭାଗ । ଅତଏବ ଆମ ଦେଶର ଗଣତନ୍ତ୍ର କେତେ ମାତ୍ରାରେ ସଙ୍କୁଚିତ, ତାହା ପ୍ରଣିଧାନଯୋଗ୍ୟ ।

ଅଧିକନ୍ତୁ ଭାରତର ଶିକ୍ଷିତ ସମାଜ, ଦେଶର ରାଜନୀତି ସମ୍ପର୍କରେ ଯେ ନିସ୍ପୃହ ତା'ର ବହୁ ବହୁ ପ୍ରମାଣ ରହିଛି । ଏପରିକି ଶିକ୍ଷା ବିଭାଗର ନିର୍ଦ୍ଦେଶକ ଭାବେ କାର୍ଯ୍ୟକରି ଅବସର ନେବାପରେ; ଜୀବନରେ ଥରେ ହେଲେ ମୁଁ କେବେ ଭୋଟଦେବାକୁ ଯାଇନାହିଁ ବୋଲି କହି ଅଭିଜାତ ଠାଣୀରେ ରହିବା ଲୋକ ମଧ୍ୟ ଅଛନ୍ତି ଏ ଦେଶରେ ।

ଶିକ୍ଷିତମାନେ ସରକାର ଗଠନରେ ପ୍ରତିନିଧି ବାଛିବା ବେଳେ ମତଦେବାକୁ ଯିବେନାହିଁ । ଶିକ୍ଷିତମାନେ ରାଷ୍ଟ୍ରର ନୀତି ସମ୍ପର୍କରେ ଆଲୋଚନା କରିବାକୁ ବା ପକ୍ଷଭୁକ୍ତ ହେବାକୁ ଯଦି ନ୍ୟୁନ କାର୍ଯ୍ୟ ବୋଲି ମନେକରିବେ ତେବେ କେଉଁ ଦେଶର ଗଣତନ୍ତ୍ର ଅବା ସମ୍ଭବ ହେବ ?

ନିକଟରେ, ଜବାହରଲାଲଙ୍କ ନିକଟକୁ ତା'ଙ୍କର ପିତା ମୋତିଲାଲ ନେହେରୁ ଲେଖିଥିବା ପତ୍ରଗୁଡ଼ିକ ସଙ୍କଳିତ ହୋଇ ପ୍ରକାଶ ପାଇଛି । ଏ ପତ୍ରଗୁଡ଼ିକ ଜବାହରଲାଲ ଲଣ୍ଡନରେ ରହି କଲେଜରେ ପଢ଼ୁଥିଲାବେଳେ, ତା'ଙ୍କ ପାଖକୁ ପ୍ରେରିତ ହୋଇଥିଲା ଭାରତରୁ । ଏବଂ ପ୍ରତିଟି ପତ୍ରରେ ପଣ୍ଡିତ ମୋତିଲାଲ ସଚେତନ କରିଥିଲେ ଯେ ଜବାହର ଯେମିତି ଭଲ ପଢ଼ି ଭବିଷ୍ୟତରେ ଆଇ.ସି.ଏସ୍ ଅଫିସର ହୁଅନ୍ତି । ପୁତ୍ରର, ଭାରତୀୟ ରାଜନୀତିରେ

ପଣି ଭବିଷ୍ୟତ ଜୀବନ ବିପନ୍ନ କରିବା କଥାକୁ ପିତା ହିସାବରେ ମୋଟେ ଗ୍ରହୁଁ ନଥିଲେ ମୋତିଲାଲ ।

ଜବାହରଲାଲ ନେହେରୁ ଆଇ.ସି.ଏସ୍ ହୋଇଥିଲେ, କେନ୍ଦ୍ରରେ କୌଣସି ବିଭାଗର ଜଣେ ସେକ୍ରେଟେରୀ ହୋଇ ଅବସର ,ନେଇଥାଆନ୍ତେ ୧୯୪୭ ମସିହାରେ । ମାତ୍ର ସେତେବେଳକୁ ସେ ହୋଇଥିଲେ ଭାରତର ପ୍ରଧାନମନ୍ତ୍ରୀ । ଜବାହରଲାଲ ସାଧାରଣ ଆଇ.ସି.ଏସ୍. ଜଣେ ହୋଇ ଅବସର ନେଇଥିଲେ, ଆମେ ନିଶ୍ଚିତରେ ହରେଇଥାଆନ୍ତୁ, ରାଷ୍ଟ୍ରନେତା ପଣ୍ଡିତ ଜବାହରଲାଲଙ୍କୁ ।

ରାଜନୀତି, ଗଣତନ୍ତ୍ରଶାସନର ବୁଦ୍ଧି ବିବେକ । ତେଣୁ ସେ ସମ୍ପର୍କରେ ରାଘବଙ୍କ ଭଳି ମେଧାବୀ ଶିକ୍ଷିତମାନେ ଆଗ୍ରହ ନ ଦେଖାଇଲେ, ଆମେ ଅନ୍ୟମାନଙ୍କ ଭଳି ଗଣତନ୍ତ୍ରକୁ ମୂର୍ଖ ବା ଅପାରଗମାନଙ୍କ ଶାସନ କହିବାନି ତ, ଆଉ କ'ଣ କହିବା !!

୨୯-୫-୮୫

# ମଝିକା ଡାଳର ମଣିଷ

ପ୍ରବୀର ବାବୁ ଅଳ୍ପଦିନ ତଳେ ସାଇକେଲରେ ଯାଉ ଯାଉ ପାଦ ଖସେଇ ତଳେ ଖାଇଲେ ନିର୍ଘାତ ଏକ କଚଡ଼ା । ପରିଣତି ହେଲା ବିଷମ । ଗୋଡ଼ଟି ଜଖମ ହୋଇଗଲା ତା'ଙ୍କର । ପ୍ରାଥମିକ ଅନୁଧ୍ୟାନ ପରେ ପରି-ଶେଷରେ ଭର୍ତ୍ତି କରାଗଲା ତାଙ୍କୁ ଡାକ୍ତରଖାନାରେ । ଅପରେସନ୍ ହେଲା ଏବଂ ପ୍ରବୀର ବାବୁ ତିନିମାସକାଳ ଶେଯରେ ପଡ଼ି, ଅବଶ୍ୟ ଭଲ ହେଲେ, କିନ୍ତୁ ସାରା ଜୀବନପାଇଁ ଗୋଟାଏ ବିରାଟ ବଡ଼ ଦୁଃଖ ରହିଗଲା ତା'ଙ୍କର ।

ଏଣିକି ସବୁଦିନେ ଛୋଟେଇ ଛୋଟେଇ ଚାଲିବେ ସେ । ଫୁର୍ତ୍ତି ଏବଂ ଫୁଆର ଖେଳୁଥିବା ଚାଲିରେ ତାଙ୍କର ଏବେ ଦେଖାଦେବ କୁହୁଡ଼ି ଅନ୍ଧାରର ଅସ୍ୱଷ୍ଟ ଆତୁର ଭାବ । ବାଡ଼ି ଖଣ୍ଡିଏ ଧରି ଛୋଟେଇ ଛୋଟେଇ ଚାଲିବେ ସେ । ମଚ୍ ମଚ୍ ଚାଲିରେ ତା'ଙ୍କର ପରଳ ମାଡ଼ିଯାଇ ଘୋଷରା ଠକ୍ ଠକ୍ ଶବ୍ଦର କାରୁଣ୍ୟ କୁଢ଼େଇ ହୋଇ ପଡ଼ିବ ଏଣିକି । ଯୋତା, ପ୍ୟାଣ୍ଟ, ପାହାଚ, ଖେଳପଡ଼ିଆ ସମସ୍ତେ ହଠାତ୍ ତା'ଙ୍କର ଅଜଣା ପାଲଟି ଯିବେ । ପ୍ରବୀର ବାବୁ ଆଉ କେଉଁ ପ୍ରବୀନ୍ନ ହୋଇ ହୁଏତ ଠିଆହେବେ ଦାଣ୍ଡରେ !

ନ ଜାଣିଥିବା ଲୋକଟିଏ ଆଙ୍ଗୁଠି ଦେଖେଇ କହିପାରେ—ହେଇମ ! ସେଇ ଛୋଟା ଲୋକଟାତ ! ପ୍ରବୀର ନାଁର ସୁସ୍ଥ ସବଳ ସାର୍ଥକତା ଉପରେ "ଛୋଟା" ନାଁଟି ଶୀର୍ଷକ ହୋଇଯିବ ନିଶ୍ଚେ । ତେଙ୍ଗା, ଡାଗଡ଼ା, ଚଉକଷିଆ ଭେଣ୍ଡା ପ୍ରବୀର ପରମାଣିକ ଏବେଠାରୁ ଲୋକମୁଖରେ ପାଇଟିଯିବେ "ଛୋଟା ପ୍ରବୀର" କିମ୍ବା କେବଳ "ଛୋଟା" ।

କଥାରେ ଅଛି ଶିକୁଳି ଯେତେ ଶକ୍ତ ହେଲେ ମଧ୍ୟ, ତାହା ତା'ର ତ୍ରୁଟିପୂର୍ଣ୍ଣ ଫାନ୍ଦଠାରୁ ଅଧିକ ଶକ୍ତିଶାଳୀ ନୁହେଁ କେବେ । ଶିକୁଳିଟିର ଅନ୍ୟ ସମସ୍ତ ଫାନ୍ଦ ହୁଏତ ଶକ୍ତିଶାଳୀ, କିନ୍ତୁ ସେଇ ଗୋଟିକ ଦୁର୍ବଳ ଫାନ୍ଦଯୋଗୁଁ, ହଠାତ୍ ସାରା ଶିକୁଳିଟି ଅସହାୟ ହୋଇଯାଏ କାର୍ଯ୍ୟକାରିତାର ପୃଷ୍ଠଭୂମିରେ । ଯେତେ ଲମ୍ବର ଯେତେ ସବଳ ଫାନ୍ଦର ଶିକୁଳି ହୋଇଥାଉ ପଛେ, ସେଇ ଗୋଟିକ ଦୁର୍ବଳ ଫାନ୍ଦଯୋଗୁଁ ସମ୍ପୂର୍ଣ୍ଣ ଶିକୁଳିଟିର ପରିଚୟ ନ୍ୟୂନ ହୋଇ-ଯାଏ ସେଇକ୍ଷଣି ।

ମଣିଷ ସତେ ଯେମିତି ଏକ ଶିକୁଳି । ପ୍ରତିଟି ଅଙ୍ଗ ପ୍ରତ୍ୟଙ୍ଗ ତା'ର ଗୋଟିଏ ଗୋଟିଏ ଫାନ୍ଦ । ମାତ୍ର ଗୋଟିଏ ଫାନ୍ଦର ବିଚ୍ୟୁତିରେ ତା'ର ପରିଚୟ ସହସା ଅଲଗା ହୋଇଯାଏ । ଭିନ୍ନ ହୋଇଯାଏ ତା'ର ନାମ । ସେ ମଣିଷ ହୋଇଥିଲେ ମଧ୍ୟ ଛୋଟା, କଣା, କେମ୍ପା, କିମ୍ବା କୁଜାରେ ପରିଣତ ହୋଇଯାଏ ସେ ମୁହୂର୍ତ୍ତକରେ ।

କିନ୍ତୁ କୌଣସି ଅଙ୍ଗହାନି ହେଲେ ବା ଅଙ୍ଗରେ କିଛି ତ୍ରୁଟି ଘଟିଲେ ମଣିଷ କ'ଣ ଅକ୍ଷମ ହୋଇପଡ଼େ ସତରେ ?

ପୃଥିବୀରେ ଏଭଳି ଫାନ୍ଦ ବିଚ୍ୟୁତିର ମଣିଷଙ୍କ ସଂଖ୍ୟା ଅକ୍ଷୁଣ୍ଣ ଅବୟବର ମଣିଷଙ୍କ ସଂଖ୍ୟାଠାରୁ ଯେ, ଯଥେଷ୍ଟ କମ୍ ଏଥିରେ ସନ୍ଦେହର ଅବକାଶ ନାହିଁ । ଗୋଟିଏ ଗୋଟିଏ ଗାଁ କିମ୍ବା ସହରରେ ହୁଏତ ଥିବେ ମାତ୍ର କେତୋଟି ଛୋଟା କିମ୍ବା କଣା । ସୁଗଠିତ ମଣିଷଙ୍କ ପାଖରେ ଏମାନେ ବଗିଚ୍ଚର ଅନ୍ୟ ଯେ କୌଣସି ଗଛମାନଙ୍କ ପରି ଗୋଟିଏ ଗୋଟିଏ ଗଛ । ଅଥଚ ବଗିଚ୍ଚର ସବୁ ଅଧିବାସୀ; ଏଇ ସାମାନ୍ୟ ଭିନ୍ନ ପ୍ରତେହେଉଥିବା ଗଛମାନଙ୍କୁ ନିଜ ମେଳର ବା ନିଜ ପଟିଆରାର ସମାସଦ ବୋଲି ଗ୍ରହଣ କରିପାରନ୍ତି ନାହିଁ ଯେମିତି ! ଉପହାସ କରି ସୁଗଠିତ ମଣିଷଟି କହେ—ଆବ୍ବେ ଛୋଟାଟା ! ଉପେକ୍ଷା କରି କହେ ଆଉ କେହି—ସେଟା ଠେମ୍ପାଟା !

ଅଚିରେ ମଣିଷଟିଏ ଉପହାସର ସାମଗ୍ରୀ ହୋଇପଡ଼େ ନିଜ ମଣିଷଙ୍କ ମେଳରେ । ନିଜ ଭୂମିରେ, ନିଜ ପରିଚିତ ଗୋଡ଼ି ମାଟି ଇଲାକାରେ, ନିଜେ ଏକ୍‌ଲା ଧୂ'ଧୂ' ତାଳଗଛ ପାଲଟି ଯାଏ ସେ ।

ମାତ୍ର ଏଭଳି ଜାତି ଭଇଟିକୁ ନେଇ ଟାପରରେ ମତ୍ତ ହେଉଥିବା ଆଉ ମଣିଷଟି ଭୁଲିଯାଏ— ହୁଏତ ପରମୁହୂର୍ତ୍ତରେ ଝୁଣ୍ଟିପଡ଼ିବ ସେ ! ହୁଏତ କେଉଁକ୍ଷଣରେ କଣ୍ଟାରେ ପଡ଼ିଯିବ ତା'ର ପାଦଟି । ସେଇକ୍ଷଣରୁ ହୁଏତ ତା'ର ପରିଚୟ ବଦଳିଯିବ. ବଦଳିଯିବ ସେ ସୁଠାମ ମଣିଷର ସର୍ବିତ ସୋପାନରୁ କଳାଅନ୍ଧାରର ବିକୃତ ଗହ୍ୱରକୁ ।

ହଜାର ହଜାର ବର୍ଷର ସଭ୍ୟ ଜୀବନ ଯାପନ ପରେ ଏତକ କ'ଣ ଆଉ ଜାଣିବାକୁ ବାକୀ ଅଛି ଯେ ଅହରହ ଝଡ଼ ଖେଳୁଥିବା ଖେଳ ପଡ଼ିଆରେ ଠିଆ ହୋଇଥିବା ଗଛର ଗୋଟିଏ ମଟକା ଡାଳ ଏ ମଣିଷ-ଗୁଡ଼ିକ ? ସେ ଝଡ଼ ଯେକୌଣସି ମୁହୂର୍ତ୍ତରେ ଛୁଇଁ ଦେବାପରେ ଯେ-କୌଣସି ଗଛକୁ, ଭାଙ୍ଗି ଦେଇପାରେ ଯେକୌଣସି ଡାଳକୁ ଉଡ଼େଇ ଦେଇପାରେ, ଯତେସବୁ ଗଛକୁ ମୂଳୋତ୍ପାଟନ କରି । କେଉଁ ସନାତନ କାଳରୁ ବହୁଚି ସେ ଝଡ଼ । ମଣିଷ ଯେତେ ସବଳ ସୁଠାମ ହେଲେ ବି ମଡ଼୍ ମାଡ଼ କରି ଭାଙ୍ଗିଯାଏ, ସେ ଝଡ଼ର ଝଟ୍କାରେ । ଅତଏବ ସାମାନ୍ୟ ଫାନ୍ଦଟିଏ ତା'ଦେହରୁ ହୁଗୁଳିଯିବା କେଉଁ ଆଶ୍ଚର୍ଯ୍ୟ କଥା ଅବା ! ମଣିଷଟିଏ ଯେ ନିକ୍ଷୁଣ ଅବସ୍ଥାରେ ଅଛି, ତାହାବି ହୋଇପାରେ ଏକ ଦୁର୍ଘଟଣା !!

ଏପଟେ ନିକ୍ଷୁଣ ଲୋକଟିଏ ତାଚ୍ଛଲ୍ୟ କରୁଚି, ଅକର୍ମଣ୍ୟ ଲୋକଟିକୁ ଦେଖି, ସେପଟେ ଅକର୍ମଣ୍ୟ ଲୋକଟି ସଂସାର ଉପରେ ବର୍ଷାକରୁଚି ତା'ର ଗଳଗଳ ଅଭିସମ୍ପାତ– ଏ ସମାଜ ଭ୍ରଷ୍ଟ ହେଉ, ମତେ ଦେଖି ହସୁଥିବା ସବୁଲୋକ ମୋ ଭଳି ଛୋଟା କେମ୍ପା ହୋଇଯାଆନ୍ତୁ, ଇତ୍ୟାଦି । ମନଃସ୍ଥିତି ଦୃଷ୍ଟିରୁ ଅକର୍ମଣ୍ୟ ଲୋକଟିର ପ୍ରତିକ୍ରିୟାକୁ ବୁଝିବା ସହଜ କିନ୍ତୁ ନିକ୍ଷୁଣ ଲୋକଟିର ଏଭଳି ଖିଆଲକୁ ବୁଝିବା କଷ୍ଟକର । ମଣିଷଟିଏ ଆଉ ମଣିଷଟିକୁ ଖାଇରେ ପଡ଼ିଥିବାର ଦେଖି ତାଳିମାରି ନାଚୁ ନଥିଲେ ବୋଧେ, ଅକର୍ମଣ୍ୟ ଲୋକଗୁଡ଼ିକ ପ୍ରତିକ୍ରିୟାଶୀଳ ହୁଅନ୍ତେ ନାହିଁ ମୋଟେ । କିନ୍ତୁ ତାହା କ'ଣ ସମ୍ଭବ ? କିଏସେ ବାରଣ କରିବ କାହାକୁ ଏଭଳି ବିକୃତ ସୁଖରୁ ! ମଣିଷ ମାତ୍ରେ ତ ପ୍ରବୃତ୍ତି ପ୍ରମତ୍ତ । ମଣିଷ ମାତ୍ରେ ତ ଖିଆଲର ଦାସ !

ପ୍ରବୀର ବାବୁ ଏବେ ଛୋଟେଇ ଚାଲୁଛନ୍ତି । ଛୋଟା ଗୋଡ଼ ସହିତ ସମ୍ଭାଳୁଛନ୍ତି ସେ ନିଜର ପ୍ରତିଟି ନୂଆ ଗୋଡ଼ଗତ ସମସ୍ୟାକୁ । କାହାର ତାଚ୍ଛଲ୍ୟମିଶା "ଛୋଟା" ଡାକ ଶୁଣି ସହିଯିବାକୁ ମଧ୍ୟ ସେ ପ୍ରସ୍ତୁତ । କିନ୍ତୁ ତା'ଙ୍କର ଭୟ, କାଳେ ଅନ୍ୟ ମଣିଷମାନଙ୍କ ପ୍ରତି ପ୍ରଚ୍ଛନ୍ନ ହିଂସ୍ରତା ସୃଷ୍ଟି ହୋଇଯିବ ତା'ଙ୍କ ମନରେ ! ପ୍ରତିକ୍ରିୟା, କାଳେ କାବୁ କରିଦେବ ତାଙ୍କୁ ଧୀରେ ଧୀରେ !!

(୫-୬-୮୫)

# ବାବୁ ବାଥ୍‌ରୁମ୍‌ରେ

ବହୁବେଳୁ ଫୋନ୍‌ଟି ବାଜୁଚି । କ୍ରିଂ କ୍ରିଂ ଶବ୍ଦରେ ଘରସାରା କମ୍ପେଇ ଦେଉଚି ଫୋନ୍ ଅଫ୍‌ଟ ହୋଇ । ତଥାପି ଫୋନ୍ ଉଠେଇ ବାର୍ତ୍ତା ଗ୍ରହଣ କରିବାକୁ ଗୃହବାସୀ ନାମଙ୍ଗ । ଡେରିରେ ଫୋନ୍ ନ ଧରିଲେ ଘରସାରା ବ୍ୟସ୍ତ ଅଛନ୍ତି ବୋଲି ଜଣାପଡ଼ିବ କେମିତି ?

ଅବଶେଷରେ ଫୋନ୍‌ର ରିସିଭର୍ ଉଠୁଚି । ହ୍ୟାଲୋ ! ହଁ, ହଁ। ହେଲେ ଆଜ୍ଞା, ବାବୁ ପୂଜାରେ ବସିଛନ୍ତି । କିଛି ସମୟ ଛାଡ଼ି ଫୋନ କରନ୍ତୁ । ନା ନା ଏଇଲେ ପ୍ରାୟ ସେ ପୂଜାରୁ ଉଠିବେନି । ଆଉ କେତେବେଳେ ଆପଣ ଫୋନ୍ କରିପାରନ୍ତି ।

ପୁଣି ଫୋନ୍ ହେଉଛି । ପୁଣି ଉତ୍ତର ମିଳୁଚି— ନା ନା ପୂଜାରୁ ଉଠି ନାହାନ୍ତି ।

ପୁନଶ୍ଚ ଫୋନ୍ । ପୁନଶ୍ଚ ଉତ୍ତର ପୂଜା ।

ବାରମ୍ବାର ଫୋନ୍ କରୁଚି କ୍ରିଂକ୍ରିଂ ଫୋନ୍ । ଉତ୍ତର ମିଳୁଚି—ପୂଜା, ପୂଜା, ପୂଜା ।

ଶେଷକୁ ବାବୁ ଅଫିସ ଚାଲିଯାଆନ୍ତି । ଘରେ ସାକ୍ଷାତ ପାଇଁ ଅନୁମତି ମିଳିଥିବା ବିଚରା ଲୋକଟିକୁ କଥାବାର୍ତ୍ତା ପାଇଁ ସୁଯୋଗ ମିଳେନି । କେମିତି ବା ମିଳନ୍ତା । କିଏ କ'ଣ କେବଳ ବସିଚି ଫୋନ୍ ରିସିଭ୍ କରି ସମସ୍ତଙ୍କୁ ସ୍ୱାଗତ କରିବାପାଇଁ ।

ଲୋକଟିଏ କୌଣସି କାମରେ, ବାବୁଙ୍କ ପାଖରେ ପହଞ୍ଚିଛି । ସନ୍ତର୍ପଣରେ ଫିଟାଉଚି ଗେଟ୍ । କାଳେ କୁକୁରଟାଏ ଥିବ ପରା ! ଦୁଆର ମୁହଁରେ ଛିଡ଼ା ହୋଇ ରହୁଚି ଲୋକ । କଲିଂବେଲରେ ହାତ ଦଉଚି । ଘର ଭିତରେ କଲିଂବେଲ୍ ଗୁମୁରୁଚି ଟିଂ, ଟଂ, ଟିଂ ଟଂ । ତଥାପି ଉତ୍ତର ମିଳୁନି ! ଅପେକ୍ଷା କରୁଚି ଲୋକ କେତେବେଳକେ ଜଣେ ଆସି ପଚାରୁଛନ୍ତି କାହାକୁ ଖୋଜୁଛନ୍ତି ! କେଉଁଠୁ ଆସିଛନ୍ତି ! କ'ଣ କାମ ! ଆଗରୁ ଆପଏଣ୍ଟମେଣ୍ଟ ଥିଲାତ ! ହଉ ତେବେ ଅପେକ୍ଷା କରନ୍ତୁ ! ବାବୁ ପୂଜାରେ ବସିଛନ୍ତି ।

ବାରଣ୍ଡାରେ ବସିଚି ଲୋକଟି । ସରୀସୃପ ପରି ଶୋଇରହି ସମୟ ଗୁହୁଁଚି ତା'କୁ । ଧୈର୍ଯ୍ୟ ତା'ର ଲମ୍ବି ଲମ୍ବି ଯାଉଚି । ନୂଆଁତାପଣରେ ସାଙ୍କୁଡ଼ି ଯାଉଚି ଆଗନ୍ତୁକ । ବିଚାରୁଚି ଲୋକଟି, ବାବୁ କେତେ ବ୍ୟସ୍ତଲୋକ ସତରେ । ଏତେ ବ୍ୟସ୍ତତା ଭିତରେ ଦୁଇଘଣ୍ଟା ପୂଜାରେ ବସୁଚନ୍ତି । ବାବୁଙ୍କ ତରନାହିଁ କେତେବେଳେ । ଏତେ ବ୍ୟସ୍ତଭିତରେ ଯିଏ ରହିଛନ୍ତି, କେତେବଡ଼ ଲୋକ ହୋଇ ନ ଥିବେ ସିଏ ! ସାଧାରଣ ସାକ୍ଷାତ ପାଇଁ ଘଣ୍ଟା ଘଣ୍ଟା ଅପେକ୍ଷା କରିବାକୁ ପଡ଼ୁଚି ।

ବାବୁ କ'ଣ ସତରେ ଦୁଇଘଣ୍ଟା ପୂଜାରେ ବସନ୍ତି ! ସତରେ କ'ଣ ବାବୁ ଏତେ ବ୍ୟସ୍ତତାରେ ବୁଡ଼ିଛନ୍ତି ?

ଅନ୍ୟମାନଙ୍କୁ ପ୍ରତୀକ୍ଷାରେ ରଖେଇବାର ଅଭ୍ୟାସଟି ଯେମିତି ବଡ଼ଲୋକିର ନମୁନା । ଯିଏ ଯେତେ ଅଧିକ ପ୍ରତୀକ୍ଷାରେ ରଖେଇ ପାରିଲେ ସିଏ ସେତେ ବଡ଼ଲୋକ । ହଜାର ହଜାର ଲୋକ ଅପେକ୍ଷା କରିଛନ୍ତି । ଦିନ ଦିନ ଧରି ଅପେକ୍ଷା କରିଛନ୍ତି । ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରିଛନ୍ତି । ହାତରେ ଫୁଲମାଳ ଧରି ଅପେକ୍ଷା କରିଛନ୍ତି । ଘର ବାରଣ୍ଡାରେ ଅପେକ୍ଷା କରିଛନ୍ତି । ଗେଟ୍ ବାହାରେ ଅପେକ୍ଷା କରିଛନ୍ତି । ପ୍ରତୀକ୍ଷାରତ ଇତର ଜନସାଧାରଣ ।

କେବଳ ବଡ଼ଲୋକମାନେ ଅପେକ୍ଷାରେ ରଖେଇ ପାରନ୍ତି । ଯିଏ ଅପେକ୍ଷାରେ ରଖେଇ ପାରିଲେ ସେଇତ ବଡ଼ ଲୋକ ! ଆଉ ତାଙ୍କୁ ତାଙ୍କୁ ପଚାରୁ ପଚାରୁ, ଯିଏ ଆସି ମୁହଁ ଦେଖେଇ ଦେଲେ, ତାଙ୍କ ବଡ଼ ପଣିଆର ବାହାଦୁରି ରହିଲା । କେଉଁଠି ?

ସେଥିପାଇଁ ପୂଜା ଗୋଟିଏ ଉପଲକ୍ଷ । ସେଥିପାଇଁ, "ଦୟାକରି ଅପେକ୍ଷା କରନ୍ତୁ" ବୋଲି ଦାନ୍ତ ଲେସେଡ଼ା କଥାଟି ଗୋଟିଏ ଭଦ୍ର କିଛେଣୀ ।

ପୂର୍ବେ ରଜା ମହାରଜାଙ୍କୁ ପ୍ରଜାମାନେ ଅପେକ୍ଷା ବା ପ୍ରତୀକ୍ଷା କରୁଥିଲେ ଗୁହାରୀ କରିବା ପାଇଁ । ରଜା ଗୋଟିଏ, ପ୍ରଜା ଅନେକ । ଇଂରେଜ ଅମଳରେ ଅପେକ୍ଷା କରିବାକୁ ପଡ଼ୁଥିଲା ବଡ଼ ବଡ଼ ଅମଲାଙ୍କୁ । ଗୋରା-

ସାଇବଙ୍କ ଦେହରେ ନୀତି ରଜଘଷ ହେଉଥିବା ବାଦାମୀ ସାଇବମାନେ ନିଜ ବାଦାମୀ ଲୋକଙ୍କୁ ଅପେକ୍ଷାରେ ରଖେଇବାରେ ଥିଲା ଏକ ରଜକୀୟ ଅନୁଭୂତି ସେତେବେଳେ । ସ୍ୱାଧୀନତା ପରେ, ଉଚ୍ଚ ଉଚ୍ଚ ଚଉକି ପାଇଥିବା, ଆମରି ଲୋକେ ମଧ୍ୟ ଚାହିଁଲେ ଅନ୍ୟମାନେ ତାଙ୍କୁ ଅପେକ୍ଷା କରନ୍ତୁ । ଅନ୍ୟମାନେ ଜାଣନ୍ତୁ ଯେ ଉଚ୍ଚ ଚଉକି ସହିତ, କେତେ ବ୍ୟସ୍ତତା ଜଡ଼ିତ ! ଶୀତତାପ ନିୟନ୍ତ୍ରିତ ଘରେ, ଝାଳ ଆର୍ଦ୍ରିଏ ହୋଇ କେତେ ଭାବିବାକୁ ପଡ଼େ ସେମାନଙ୍କୁ ଦେଶର ଭଲମନ୍ଦ ବିଷୟରେ । ତା'ଛଡ଼ା, ସହଜଦର୍ଶନ ଦେଲେ ସେ ଚଉକିର କେଉଁ ମର୍ଯ୍ୟାଦା ରହିଲା ଅବା ! ଯାହା ଯେତେ ଦୁର୍ମୂଲ୍ୟ, ତାହା ସେତେ ମହନୀୟ । ପ୍ରତୀକ୍ଷା ଯେତେ ପ୍ରଲମ୍ବିତ; ପ୍ରତୀକ୍ଷାରେ ରଖେଇଥିବା ବ୍ୟକ୍ତିତ୍ୱ ସେତେ ଅଭାବନୀୟ, ମନେ ହେବା ସ୍ୱାଭାବିକ ନୁହେଁକି ?

ଚଉକି ଯେତେ ବଡ଼ ଅପେକ୍ଷାର ଆଲିଗଡ଼ ତାର ସେତେ ସେତେ ବୃହତ୍ ।

ମାତ୍ର ସମ୍ପ୍ରତି କେବଳ ଅମଲାମାନେ, ଅପେକ୍ଷାରେ ରଖେଇବାର ଏକଚାଟିଆ ଅଭ୍ୟାସକୁ ଆଉ କବଳିତକରି ନାହାନ୍ତି । ଆଜି ପ୍ରତ୍ୟେକ ଲୋକ ଚାହେଁ, ସେ ବଡ଼ଲୋକ ହେବ । ତା'କୁ ଆଉ ମଣିଷମାନେ. ଅପେକ୍ଷା କରିବା ଦରକାର । ଅପେକ୍ଷାରେ ରଖେଇ ନପାରିଲେ, ତା'ର ସାମାଜିକ ଓଜନ ଜାହିର ହେବ କେମିତି ? ଅପେକ୍ଷାରେ ଧୈର୍ଯ୍ୟ ହିଁ ଆଜି ସାମାଜିକ ଜୀବନ !

ଅତଏବ, ବାବୁ ପୂଜାରେ ବସିବା ଦରକାର । ବାବୁ ପୂଜାରେ ଘଣ୍ଟା ଘଣ୍ଟା ବୁଡ଼ି ରହୁଥିବାର କଥିଁଳ ଘୋଷଣାଟି ପ୍ରକାରନ୍ତରେ କହିବ—ରେ ସାନ ମଣିଷ ଅପେକ୍ଷା କର । ତୋ'ଠାରୁ ବଡ଼ ଜଣେ ପୂଜାରେ ବସିଚି ପର ! ଯାହାର ପୂଜାକାରୀଙ୍କ ପାଖରେ କାମ ଅଛି, ତା'ର ଅପେକ୍ଷା ନ କରି ଗତି କାହିଁ ?

ଦୁଇଘଣ୍ଟାର ପୂଜାପରେ, ହୁଏତ, ବାବୁ କପଟପଶା ଖେଳିଲାପରି କହିବେ—ମୁଁ ଦୁଃଖିତ ! ଆପଣଙ୍କୁ ଏତେବେଳେ ଯାଏଁ ଅପେକ୍ଷା କରିବାକୁ ପଡ଼ିଲା । ସତରେ କେଡ଼େ ଭଦ୍ର ସଫେଇ !

ମୁଁ ଅମଲା ହେଇପାରେ, ହୋଇପାରେ ମୁଁ ବ୍ୟବସାୟୀ, ମୁଁ ଜନସେବା କରୁଥାଇପାରେ, ନଚେତ୍ବା ରଜନୀତି କରୁଥାଇପାରେ ମୁଁ; କିନ୍ତୁ ଲୋକେ ମତେ ଅପେକ୍ଷା କରିବା ଦରକାର । ଆଉ ଆଉ ମଣିଷମାନଙ୍କଠାରୁ ଯେ ମୁଁ ଅନେକ ବ୍ୟସ୍ତ ଏକଥା ମୋ ପାଖକୁ ଆସୁଥିବା ଲୋକେ ନ ଜାଣିଲେ, ମୁଁ ତାଙ୍କଠାରୁ ବଡ଼ଲୋକ ହେବି କେମିତି ?

ମୁଁ ହାକିମ, ମତେ ଅଫିସର ବଡ଼ବାବୁ ଅପେକ୍ଷା କରନ୍ତୁ । ମୁଁ ବଡ଼ବାବୁ, ମତେ ଅଫିସର ସାନବାବୁମାନେ ଅପେକ୍ଷା କରିବା ଦରକାର ! ଆମ୍ଭେ ଅଫିସର ସାନବାବୁ, ଆମ୍ଭଙ୍କୁ ଅଫିସର ପିଅନ ଅପେକ୍ଷା କରିବା ଅବଶ୍ୟ ବିଧେୟ । ଆହେ ! ମୁଁ ପରା ଅଫିସ ପିଅନ, ମତେ ମେହେନ୍ତର ବାପୁଡ଼ା ଅପେକ୍ଷା ନ କରି ତା'ର ଗତି କାହିଁ ? ମୁଁ ସରକାରୀ ଅଫିସ ମେହେନ୍ତର, ମତେ ଘରୋଇ ଅଫିସର ମେହେନ୍ତର ଅପେକ୍ଷା କରୁ । ଏ ଯେମିତି ଅପେକ୍ଷାର ଦିନ ଗତି । ଅପେକ୍ଷା ଏଠି ମନସ୍ତାତ୍ତ୍ୱିକ ନିୟମ । ସାମାଜର ସର୍ବନିମ୍ନ ଲୋକଟିକୁ ତେବେ ଅପେକ୍ଷା କରିବ କିଏ ?

ତେବେ, ଆଜିର ଏ ଅତ୍ୟନ୍ତ ଆଧୁନିକ କାଳରେ, ପୂଜା କରିବାର ପରମ୍ପରା ମଫସଲୀ ହୋଇଗଲାଣି । ପୂଜାରେ ବସିବା ହୁଏତ ଆଉ ବଡ଼-ଲୋକି ହୋଇନାହିଁ । କିନ୍ତୁ ଲୋକଙ୍କୁ ଅପେକ୍ଷା କରେଇବା ଦରକାର । ଅତଏବ ଆଜିକାଲି ବାବୁମାନଙ୍କୁ ଘରେ ରହିଥିବା ସମୟରେ ସବୁବେଳେ ବାଥ୍‌ରୁମରେ ରହିବାକୁ ପଡ଼ୁଚି । ଦିବସର ବିଭିନ୍ନ ପ୍ରହରରେ ବାବୁ-ମାନଙ୍କର ଦ୍ୱାରସ୍ଥ ହେଲେ ମଧ୍ୟ ହୁଏତ ଶୁଣିବାକୁ ମିଳିବ—ବାବୁ' ବାଥ୍-ରୁମରେ । ଫୋନ୍‌କଲେ ଉତ୍ତର ଆସିବ—ବାବୁ' ବାଥ୍‌ରୁମରେ । ତା'ର ଅର୍ଥ ଘଣ୍ଟାଏ ଅପେକ୍ଷାକର ।

ବଡ଼ଲୋକ ହେବାପାଇଁ ହେଲେ, ଘରେ ରହୁଥିବା ସମୟରୁ ଅଧିକାଂଶ ସମୟ ଯେମିତି କଟେଇବା ଦରକାର ବାଥ୍‌ରୁମରେ । ବାବୁ ସୋଫାରେ ବସି ଖବରକାଗଜ ପଢ଼ୁଛନ୍ତି । ଫୋନ୍ ଆସିଲା; ଆଜ୍ଞା ଅମୁକ ବାବୁ ଆପଣଙ୍କୁ ଫୋନ୍‌ରେ ଡାକୁଛନ୍ତି ।

ବାବୁ ମୁହଁ ନବୁଲେଇ, ହାଇମାରି ଉତ୍ତର ଦେଲେ, କହିଦେ, "ବାବୁ ବାଥ୍‌ରୁମରେ ଅଛନ୍ତି ।"

(୧୯—୬—୮୫)

## ଆମେ ଓଡ଼ିଆ

ଟେଗଲେଇପଡ଼ାର ନାରଣ ଗଉଡେ ଆମର ଖାଣ୍ଟି ଓଡ଼ିଆ ଲୋକ । ଓଡ଼ିଆଙ୍କ ପାଇଁ ପ୍ରାଣ କାନ୍ଦେ ତାଙ୍କର । ନିଜ ଲୋକ ନିଜ ଭାଇ ବିରାଦରମାନେ କେମିତି ଆପଣା ମାଟିର ଟେକ ରଖନ୍ତୁ, ଏଇ ତା'ଙ୍କର ଭାବନା ସବୁ ସମୟରେ ।

ଓଡ଼ିଆ ଲିପି, ଚିତା, ଝୋଟି, ମୁରୁଜ, ଟୋକେଇ, ଭୋଗେଇ, କୁଲା, ଛାଞ୍ଚୁଣୀ ଆଦି ପ୍ରତିଟି ସାଧାରଣ ପଦାର୍ଥଠାରୁ ଆରମ୍ଭ କରି ଓଡ଼ିଶୀନାଚ ଓ କୋଣାର୍କ ମନ୍ଦିର ପର୍ଯ୍ୟନ୍ତ ପ୍ରତିଟି ଓଡ଼ିଆ ସୃଷ୍ଟିରେ ଯେ ଏକ ଇଙ୍ଗିତ୍ୟପୂର୍ଣ୍ଣ କଳାନୈପୁଣ୍ୟ ରହିଛି, ଏ ବିଷୟରେ ସେ ନିଃସନ୍ଦେହ । ଓଡ଼ିଶାର ଅତୀତ ନେଇ ସେ ଖୁବ୍ ଗର୍ବିତ ତେଣୁ ।

ଟିକିଏ ଗରମ ହୋଇଗଲେ, ତାଙ୍କ ପାଟିରୁ ବାହାରେ— ଆମେ ଓଡ଼ିଆ ! ଆମେ ଏମିତି ଥିଲୁ ସେମିତି ଥିଲୁ । ଆମପରି ଆଉ କିଏରେ ! ଏବକୁ ସିନା କେମିତି ଟିକେ ଆମେ ଅଣେଇ ହେଇପଡ଼ିଚୁ, ନୋହିଲେ ଆମ ଲଞ୍ଜରେ ହାତ ଦେବାକୁ ଅଛି କିଏସେ ଏ ମାଟି ସଂସାରରେ ! ଖାରବେଳଙ୍କ କଥା ଶୁଣିଚଟି ! ଅଶୋକ କେମିତି ଏଇ ମାଟିରେ ଗୋଡ଼ ଦେଉ ଦେଉ, ନିସ୍ତରିଲି ନିସ୍ତରିଲି ବୋଲି ଭୂଇଁ କାମୁଡ଼ି ପଡ଼ିଲେ ; ଇତିହାସରୁ ପଢ଼ିନାହଁ ନା କଣ ? ପାଇକ ପୁଏ ଥିଲେ ଆମର କେଡ଼େ ପାରିବାର ! କୋଣାର୍କ ମନ୍ଦିର ତ ଦେଖିଚ, ଆଉ ଆମ ଓଡ଼ିଆଙ୍କ ପାରିଲାପଣ କଥା ପଚାରୁଚ କାହିଁକି ?

ଏଭଳି ଆପଣା ଓଡ଼ିଆପଣରେ ତାଉ ଖାଉଥିବା ନାରଣ ଗଉଡେ, ଖାଲି ଯେ ସଚେତନ ଅବସ୍ଥାରେ, ଓଡ଼ିଆ ଓଡ଼ିଆ ହୁଅନ୍ତି, ସେକଥା ନୁହେଁ ।

ଘୋର ନିଦ୍ରାରେ ଶୋଇଥିବା ବେଳେ ମଧ୍ୟ ସେ ସ୍ୱପ୍ନ ଦେଖନ୍ତି ଓଡ଼ିଆଙ୍କ ବିଷୟରେ । ପ୍ରବଳ ନିଦ୍ରାର ପ୍ରଚଣ୍ଡ ଇଲାକାରେ ସେ ଯେଉଁ ଘୋରତର ଶବ୍ଦରେ ପ୍ରକମ୍ପିତ ଘୋଡ଼ାଟାପୁର ଶବ୍ଦ ଶୁଣନ୍ତି, ତାହା ଯେମନ୍ତ ଟପାକ୍ ଟପାକ୍ ଧ୍ୱନିର ଖୋଳ ଭିତରେ ଓଡ଼ିଆ ଓଡ଼ିଆ ବୋଲି କେବଳ ଉଚ୍ଚାରଣ କରି ଚାଲିଥାଏ ସବୁବେଳେ ।

ଏଇଭଳି ଦିନେ ନିଘୋଡ଼ ନିଦରେ ବୁଡ଼ି ରହିଥିବା ସମୟରେ ସେ ଦେଖିଲେ ଏକ ଅଜବ ସ୍ୱପ୍ନ । ଦେଖିଲେ– ଯମପୁରୀରେ ପହଞ୍ଚିଛନ୍ତି ସେ । ବିରାଟ ଏକ ଦରବାର ବସିଚି ସେଠି । ହୀରା, ନୀଳା, ବୈଦୂର୍ଯ୍ୟରେ ଝଲମଲ ହେଉଚି ଦରବାର କାଛବାଡ଼ । ଭୀଷଣ ଭିଡ଼ । ହଇଚଇ ଲାଗିଚି । ଖୋଦ୍ ଯମରାଜ ମହିଷ ମୁଣ୍ଡ ଶୋଭିତ ଏକ ସିଂହାସନରେ କରପ୍ରସାରଣ ପୂର୍ବକ ଅଭୟମୁଦ୍ରାରେ ସେଠାରେ ଉପସ୍ଥିତ ।

ଢେର ଗୁଡ଼ାଏ ଓଡ଼ିଆ ଲୋକଙ୍କୁ ରାଉତେ ଭେଟିଲେ ସେଠି । ସବୁ-ଗୁଡ଼ାକ ମୁହଁକୁ କୁମ୍ଭ କରି ବସିଚନ୍ତି । ମୁହଁରେ ଟିକେ ମଧ୍ୟ ହସ ନାହିଁ । ବୁଝୁବୁଝୁ ଜଥା କଣ' କ'ଣ ନା ପ୍ରଶ୍ନୋତ୍ତର ଅଧିବେଶନ ଚାଲିଚି ଯମରାଜଙ୍କର ଦରବାରରେ । ଓଡ଼ିଆ ଗୁଡ଼ାକତ ପ୍ରଶ୍ନକୁ ବାଘ ! ଅତଏବ ତା'ଙ୍କର ଏ ଅବସ୍ଥା ।

ନାରଣ ରାଉତେ ସେଠେଇଁ ହାବୁଡ଼ିଯାଇ ଭାବିଲେ : କି ହେଲା ! ଆମ୍ଭେ ଥାଉ ଥାଉ ପୁଣି ଓଡ଼ିଆଙ୍କ ନାକ ନିଶ ତଳେ ପଡ଼ିବ ! ନାଇଁ ନାଇଁ, ତା'ଆମ୍ଭେ କସ୍ମିନକାଳେ କରେଇ ଦବୁନି । ଠୁଣି ଦେଇ ଅବଶ୍ୟ ଟେକି ଧରିବୁ ।

ଦେଖାଗଲା, ଅଣ୍ଡାର କମର ପଟିଟିକୁ ଟିକେ ଆଣ୍ଠ କରିଦେଇ ରାଉତ ଆପଣେ ଯମରାଜାଙ୍କର ପ୍ରଶ୍ନ ଆଡ଼କୁ କାନ ଡେରିଲେ ।

ଯମରାଜ ପଚାରିଲେ– ହେ ପ୍ରିୟ ପାପୀଗଣ, ବର୍ତ୍ତମାନ କୁହ, ମର ପୃଥିବୀରେ ସବୁଠାରୁ ଅଧିକ କଳାନୈପୁଣ୍ୟରେ ଭରା ଭାସ୍କର୍ଯ୍ୟର ନମୁନା କେଉଁସ୍ଥାନରେ ଅବସ୍ଥିତ ।

ରାଉତେ ଦେଖିଲେ, ସବୁ ଓଡ଼ିଆଗୁଡ଼ାକ, ମୁହଁ ତଳକୁ କରି ବସିଚନ୍ତି । ପ୍ରଶ୍ନଶୁଣି, ନଶୁଣିଲାପରି ହଉଛନ୍ତି ସଭିଏଁ । ଆଉ ଅପର ଲୋକଗୁଡ଼େ କିଏ ହମ ହମ ହେଲେଣି ଉତ୍ତର ଦବାକୁ । ତହୁଁ ସେ କାଳ ବିଳମ୍ବ ନକରି ଉଠିପଡ଼ି କହିଲେ : ଆଜ୍ଞା ଆପଣେ ତାହା ଆମ କୋଣାର୍କ ଅଟଇ । କୋଣାର୍କ ସରି, ଆଉ କିଛି ନାହିଁ ପୃଥିବୀରେ ।

ସେଇଠୁ ଯମରାଜ ପଚାରିଲେ ; ତୁମେ କିଏସେ ବତ୍ସ ?

ରାଉତେ ହର୍ଷ ମୁଖରେ ଉତ୍ତର କଲେ– ପ୍ରଭୁ ! ଆମ୍ଭେ ଜଣେ ଅକିଞ୍ଚନ ଓଡ଼ିଆ ।

ତା'ପରେ ଯମରାଜ ପଚାରିଲେ, ଆଚ୍ଛା କୁହତ, କୋଣାର୍କ ମନ୍ଦିର କେଉଁମାନେ ଗଢ଼ିଥିଲେ ?

ଏଥରକ ରଉତେ ଦେଖାଗଲେ ଆହୁରି ଅଧିକ ହସ ହସ । ସେ ନିଜର ବାମ କହୁଣୀଟିକୁ କୁଣ୍ଡାଉ କୁଣ୍ଡାଉ କହିଲେ— ମହାପ୍ରଭୁ ! ଓଡ଼ିଆ-ମାନଙ୍କ ଛଡ଼ା ଆଉ କିଏ କରନ୍ତା, ଏଭଳି ଅଦ୍ଭୁତ କାର୍ଯ୍ୟ ! ଆମେ ଓଡ଼ିଆ, କୋଣାର୍କ ମନ୍ଦିରଟିକୁ ଗଢ଼ିଥିବାରୁ ସତରେ ଗର୍ବିତ ।

ଉତ୍ତରଟି ଶୁଣି, ଯମରାଜ ରଉତଙ୍କୁ ପାଖକୁ ଆସିବାପାଇଁ ହାତ-ଠାରିଲେ । ନାରଣ ରଉତେ ମହିଷ ସିଂହାସନର ନିକଟ ହୁଅନ୍ତେ, ଦେଖାଗଲା ଯମରାଜ ଗୋଟିଏ ବେତ ବାହାର କରି ତାଙ୍କୁ ଦୃଢପାହାର ଅଶୋଭନୀୟ ଆଘାତ ଦେଲେ । ବେତମାଡ଼ରେ ଚିତ୍କାର କରି ପକେଇଲେ ନାରଣ ରଉତେ ।

ହେଲେ ସେ ଛାଡ଼ିବା ଲୋକ ନୁହନ୍ତି । ସଙ୍ଗେ ସଙ୍ଗେ ପ୍ରତିବାଦ କଲେ ସେ ।

—ହେ ଧର୍ମରାଜ ! ଆପଣ ଧର୍ମ ହୋଇ ଅଧର୍ମ ଆଚରଣ କରୁଛନ୍ତି କିପରି ? ଆମ୍ଭେ ସତ୍ୟ ବୟାନ କଲାବେଳେ, ଆପଣଙ୍କର ଏଭଳି ଆଚରଣ କେତେ ମାତ୍ରାରେ ଯୁକ୍ତିଯୁକ୍ତ ?

କିନ୍ତୁ ମୋଟେ ବିଚଳିତ ନ ହୋଇ, ଯମରାଜ କହିଲେ, ମିଥ୍ୟାବାଦୀ ! ତୁମେ ଅସତ୍ୟ ପ୍ରକାଶ କରୁଛ । ଆମ୍ଭ ମତରେ, କୋଣାର୍କ ମନ୍ଦିର ଓଡ଼ିଆ-ମାନେ ଗଢ଼ି ନାହାନ୍ତି । ଆଉ ଅନ୍ୟକେହି ଗଢ଼ ଛନ୍ତି ତାକୁ । ଯଦି ସେମାନେ ପ୍ରକୃତରେ କୋଣାର୍କ ଗଢ଼ିଥାଆନ୍ତେ, ତେବେ ଆଧୁନିକ କାଳରେ ସେଭଳି କିଛି ଉତ୍କର୍ଷତା ତାଙ୍କର ଥାଆନ୍ତା ନିଶ୍ଚୟ । ତୁମର ଏଇ ମିଥ୍ୟା ପ୍ରକାଶ ଯୋଗୁଁ ଅବଶ୍ୟ ତୁମେ ଦଣ୍ଡିତ ହେବ ।

ଆଉ ଏଥର ରଉତଙ୍କୁ ସମ୍ଭାଳେ କିଏ ? ସେ ପାଟିକରି କହିଲେ, ନାଇଁ ଆଜ୍ଞା, ମୁଁ ହଲପ୍ କରି କହୁଚି, ଆମେ ଓଡ଼ିଆ କେବଳ କୋଣାର୍କ ମନ୍ଦିର ଗଢ଼ିଚୁ, ଆଉ କେହିନୁହେଁ ।

ତା'ର ପ୍ରମାଣ ତୁମେ ଦେଇପାରିବ ? ପଚାରିଲେ ଯମରାଜ ।

ରଉତେ ଉତ୍ତର ଦେଲେ ; କାହିଁକି ନୁହେଁ, ଅଲବତ୍ ପ୍ରମାଣ ଦବୁ ।

ତହୁଁ ଯମରାଜ, ଶିଳାଖଣ୍ଡିଏ ଅଣାଇ ଅର୍ପଣ କଲେ ରଉତଙ୍କ ହାତରେ । ସତର ଦିନ ସମୟ ଦେଇ କହିଲେ, ଏଇ ଶିଳାଖଣ୍ଡିକ ନେଇ ତୁମେ ସେଥିରେ କିଛି ଭାସ୍କର୍ଯ୍ୟକଳା, ଖୋଦନକରି ଆଣ । ସେଇଥିରୁ ଜଣାପଡ଼ିବ ତୁମ ଓଡ଼ିଆଙ୍କର କଳା ନୈପୁଣ୍ୟତା କେତେ ! ତୁମେମାନେ

କୋଣାର୍କ ମନ୍ଦିର ତୋଳିଛ କି ନାହିଁ, ସେଇଥିରୁ ଆମେ ବିବେଚନା କରିପାରିବା ।

ସହାସ୍ୟ ବଦନରେ ନାରଣ ଗଉତେ ଗ୍ରହଣ କଲେ, ଶିଳାଖଣ୍ଡକୁ ।

ସତର ଦିନ ଗତ ହେଲା । ଯମରାଜଙ୍କର ଦରବାର ବସିଚି । ଗ୍ଭଲିଚି ସଭା । ଏଇ ସମୟରେ ଗଉତେ ପହଞ୍ଚିଲେ ଯମରାଜଙ୍କର ସମ୍ମୁଖରେ । ଗଉତଙ୍କ ମୁହଁ ହସ ହସ । ଯମରାଜାଙ୍କର ମୁହଁ ଗମ୍ଭୀର । ଲୁଗାରେ ଗୁଡ଼ା-ହୋଇଥିବା ଅଭାବନୀୟ ଭାସ୍କର୍ଯ୍ୟ ନମୁନାଟିକୁ ଖୋଲିବାକୁ ଆରମ୍ଭ କଲେ ଗଉତେ ଏଥର ।

ସାତ ପରସ୍ତ ଲୁଗା ଭିତରୁ ଅବଶେଷରେ ବାହାରିଲା ବସ୍ତୁଟି । ଯମରାଜାଙ୍କ ସମେତ, ସାରା ଦରବାରର ସଭାସଦ୍ ଓ ଉପସ୍ଥିତ ନରନାରୀ ଦେଖିଲେ, ଆମ ନାରଣ ଗଉତେ ସତର ଦିନ ଲାଗି, ଝାଳନାଳ ହୋଇ ଯାହା ଗଢ଼ିଛନ୍ତି; ତାହା ଗୋଟିଏ ଆବଡ଼ା ଖାବଡ଼ା "ଶିଳପୁଆ" ।

ଯମରାଜ କ'ଣ ବିବେଚନା କଲେ କେଜାଣି !

( ୨୮ । ୬ । ୮୫ )

# ଶପଥ କରି ମୁଁ କହୁଛି

ଦୁନିଆଁରେ ଯେତେ ଟାଣୁଆ ଶବ୍ଦ ଅଛି, ତା'ଭିତରେ 'ସତ୍ୟ' ନାମକ ଶବ୍ଦଟି ଯେ ଟାଣତମ, ଏକଥା ଅନେକେ ବୋଧହୁଏ ସ୍ୱୀକାର କରିବେ ।

ସତ୍ୟ ହିଁ ସୁନ୍ଦର, ସତ୍ୟ ହିଁ ଭଗବାନ ଏବଂ ସତ୍ୟ ହିଁ ଚିରନ୍ତନ । ସତ୍ୟ ହିଁ ଜଗତର ଏକମାତ୍ର ଧର୍ମ ଏବଂ ଅସତ୍ୟ ହିଁ ଅଧର୍ମ । ତେଣୁ ପ୍ରତ୍ୟେକ ମଣିଷ ଯେ ସତ୍ୟର ଅନୁବ୍ରତୀ ହେବା ଏକାନ୍ତ ବିଧେୟ । ଏହା ପୁରାତନ କାଳରୁ ଅଧୁନାତନ ସମୟ ପର୍ଯ୍ୟନ୍ତ, ଧର୍ମଶାସ୍ତ୍ରଠାରୁ ଆରମ୍ଭ କରି ଆଇନଶାସ୍ତ୍ର ପର୍ଯ୍ୟନ୍ତ ସବୁସ୍ତରରେ ନିଷ୍ଠାର ସହ ଲିପିବଦ୍ଧ ହୋଇଛି ।

ସେଇଥିପାଇଁ ବୋଧେ ପିଲାବେଳୁ ଖଡ଼ି ଧରିବା ପୂର୍ବରୁ ପ୍ରାର୍ଥନା ଆକାରରେ ବାପ, ମା', ଗୁରୁଜନମାନେ ଆଙ୍ଗୁଠି ଧରେଇ ବାଟ ଚଲେଇଲା ପରି ଗୋଟିଏ ଧାଡ଼ି ଧରେଇ ଦିଅନ୍ତି କୋମଳମତି ବାଳକ ବାଳିକା ମାନଙ୍କୁ–ସତ କହିବାକୁ କିଆଁ ଡରିବି/ସତକହି ପଛେ ମଲେ ମରିବି । ସତ କହିବା ଏକ ଦେବତୁଲ୍ୟ ଅଭ୍ୟାସ । ଅତଏବ କିଏ କାହିଁକି ନ ଚାହିଁବ ନିଜର ପିଲାମାନଙ୍କୁ ଦେବତାଙ୍କ ଅଂଶରେ ଅଂଶୁଆଳ ନ କରିବା ପାଇଁ !

ସତକହି ସୁନାମ ଅର୍ଜିଥିବା ମହାମାନବମାନଙ୍କର ସଂଖ୍ୟା ଆମ ଇତିହାସରେ କିଛି କମ୍ ନୁହେଁ । ସତ କହି ଜୀବନ ଦେଇଥିବା ଲୋକ ହିଁ ପ୍ରକୃତରେ ଅମର ବୋଲି ଆମେ ଶାସ୍ତ୍ରମାନଙ୍କରୁ ଅବଶ୍ୟ ଅଧ୍ୟୟନ କରିଥାଉ ।

ତେଣୁ ଏକଥା ସ୍ୱୀକାର କରିବାକୁ ପଡ଼ିବ ଯେ, ସତ କହିବା ଏକ ମହତ୍ ପରମ୍ପରା ଏବଂ ସତ୍ୟ ବୟାନ, ସାମାଜିକ ସୁସ୍ଥତାର ଏକ ପ୍ରାଥମିକ ଆବଶ୍ୟକତା ।

ଯେଉଁ ସମାଜରେ ଶାସକ ମିଥ୍ୟା କହନ୍ତି, ମନ୍ତ୍ରୀ ମିଥ୍ୟା ତଥ୍ୟ ପରିବେଷଣ କରନ୍ତି, ଶିକ୍ଷକ ମିଥ୍ୟା ଆଚରଣ କରନ୍ତି, ସାମ୍ବାଦିକ ରଚନା କରନ୍ତି ମିଥ୍ୟା ତଥ୍ୟ ଏବଂ ସାଧାରଣ ଜନତା ବୁଡ଼ିରହନ୍ତି ମିଥ୍ୟାଚାରରେ, ସେ ସମାଜ ନୈରାଜ୍ୟରେ ପରିଣତ ହେବା ସହଜ ଏବଂ ସ୍ୱାଭାବିକ । ତେଣୁ ସମାଜ ସଙ୍ଗଠନରେ, ପ୍ରତ୍ୟେକ ଶାସ୍ତ୍ର ଓ ଆଇନ୍ କାନୁନ୍‌ର ଅଣୁତମ ସ୍ଥିତି ଯେ ସତ୍ୟ ଆବଶ୍ୟକରେ, ତାହା କିଏ ଅବା ଅସ୍ୱୀକାର କରିବ ? ଅଥଚ ସେ "ସତ୍ୟ" ଆଜି ଆଉ କାହିଁ ?

ପୁରାତନ କାଳରେ ରଜା ରାଜୁଡ଼ାଙ୍କ ବେଳେ ସତ୍ୟ ବୟାନ ଦେବାର ପରମ୍ପରା ହୁଏତ ଥିଲା ଭିନ୍ନ ରକମର । ମୁଁ ଶପଥକରି ସତ କହୁଛି ବୋଲି ଉଚ୍ଚାରଣ କରିଦେବା ମାତ୍ରେ, ସତ ନକହି ବକ୍ତବ୍ୟ ହେଉଥିବା ଲୋକଟିର ଆଉ ଗତ୍ୟନ୍ତର ନଥାଏ ଯେମିତି ।

କିନ୍ତୁ ବର୍ତ୍ତମାନର ଆଇନସିଦ୍ଧ ଗଣତାନ୍ତ୍ରିକ ସମାଜରେ କୌଣସି କଥାକୁ ସତବୋଲି ଶପଥକରି କହିବାକୁ ଗଲେ, ଲୋଡ଼ା ମାଜିଷ୍ଟ୍ରେଟ, ଓକିଲ, ମୋହରିର ଏବଂ ଷ୍ଟାମ୍ପ ପେପର୍ । ଆପଣ ଅମୁକ ବିଷୟରେ ସତ କଥାଟିଏ କହିବାକୁ ଚାହାନ୍ତି, ତେବେ ନିଜର ସତ୍ୟବୟାନ ଦେବାକୁ ହେଲେ, ଆପଣ ଯେ ପୁରୁଣାକାଳିଆ ପୁଅ ମୁଣ୍ଡରେ ହାତ, ମହାର୍ଦ୍ଦ ଛୁଆଁ, ତୁଳସୀ ଚଉରମୂଳେ ଶପଥ, ତ୍ରିକାଳ ସନ୍ଧ୍ୟାର ଦୋହି କିମ୍ବା ବାପରଣ ଆଦି ପଦ୍ଧତିରେ କାମ ଚଳେଇଦେଲେ, ଶାସନ ଆଖିରେ ତାହା ଚଳିବ ନାହିଁ ।

ସତ କଥାଟିକୁ ସତ୍ୟପାଠ ବା ଆଫିଡାଭିଟ୍ କରି କହିବା ପାଇଁ ସରକାରୀ ମୋହର ଦିଆ କାଗଜ ଲୋଡ଼ା, ତା'ପରେ ଦରକାର ମୋହରିଙ୍କର କୋର୍ଟଭାଷା ପରିଚିତ ହାତଲେଖା, ପୁଣି ଜଣେ ଓକିଲ ବା ତରଫ ପ୍ରତିନିଧି ଏବଂ ଏସବୁ ସମାହିତ ହେବ ଜଣେ ଧର୍ମାବତାର ମାଜିଷ୍ଟ୍ରେଟଙ୍କର ଅଫିସିକ ଉପସ୍ଥିତିରେ । ଦେଶ ବା ଶାସନ ତରଫରୁ କୌଣସି କଥାକୁ ସତ୍ୟତା ଦାନ କରିବାରେ ଏଇମାନେ ହିଁ ଆଜି ଆମ ସମାଜର ମାନନୀୟ ପ୍ରତିନିଧିଗଣ ।

ମଣିଷ ଆପାତତଃ ସରଳ ଥିବା ସମୟରେ ଆଗେ ବିନା କାଗଜ-ପତ୍ରରେ ଯେଉଁକାମ ଚାଲୁଥିଲା, ଆଜି ସେସବୁ ବିଶ୍ୱଗଳୟ ବା ଦପ୍ତର-ମାନଙ୍କରେ କାଗଜପତ୍ର ମାଧ୍ୟମରେ କରାଯିବା ଅତ୍ୟନ୍ତ ଜରୁରୀ । ସଭ୍ୟତାର ଉତାଳ ତରଙ୍ଗ ଭିତରେ, ମଣିଷ ଆଧୁନିକତାର ଯେଉଁ କୃତିତ୍ୱ

ହାସଲ କରିଛି ସେଥିରେ କାଗଜ ଯେମିତି ଏକମାତ୍ର ସାକ୍ଷୀ । କାଗଜ ହିଁ ସତ୍ୟକୁ ସତ୍ୟ କରିପାରେ ଏବଂ ମିଥ୍ୟାକୁ ସତ୍ୟ । କାଗଜ ହିଁ ବୋଧେ ଆଜିର ଠାକୁର ।

ଫଳରେ ଆଜି ସକଳ ସତ୍ୟପାଠର ସଫଳ ସାକ୍ଷୀ କେବଳ କାଗଜ ।

ସଭ୍ୟ ଏବଂ ଆଇନ୍ ସର୍ବସ୍ୱ ଆଧୁନିକ ଜୀବନରେ ତେଣୁ କୌଣସି କଥା ବିଗ୍ରଳୟରେ ବିଗ୍ରରପତିଙ୍କ ଦ୍ୱାରା ସତବୋଲି ଲିପିବଦ୍ଧ ହୋଇଗଲେ ତାହା ପ୍ରକୃତ ସତ୍ୟ ପାଲଟି ଯାଏ ।

ଭନୁମତୀ ଧର୍ଷିତା ହୋଇ ଜୀବନ ବେଇ । ଅନେକେ ଦେଖିଲେ ସେକଥା ସ୍ୱଚକ୍ଷୁରେ । କିନ୍ତୁ ବିଚାରପତି କହିଲେ ଏ ଘଟଣାରେ ସେମିତି କିଛି ସତ୍ୟତା ନାହିଁ । ତେଣୁ ଭନୁମତୀ ଧର୍ଷିତା ହୋଇନାହିଁ । ବିଚାରପତିଙ୍କ କଥା ହିଁ ସତ୍ୟ ବର୍ତ୍ତମାନ ।

ମୋହିନୀ ସୁଦାମାଙ୍କର ପ୍ରକୃତ ପତ୍ନୀ ହୋଇପାରନ୍ତି, ମାତ୍ର ବିଚାର-ପତିଙ୍କ ଇଜ୍‌ଲସରେ ସୁଦାମ ସତ୍ୟପାଠ କରି ଶପଥ କରିଛନ୍ତି ଯେ, କୁମୁଦିନୀ ହିଁ ତାଙ୍କର ପତ୍ନୀ, ମୋହିନୀ ନୁହନ୍ତି । ତେଣୁ ସୁଦାମଙ୍କର ପ୍ରକୃତ ପତ୍ନୀ ।

ସରକାର କଡ଼ାକଡ଼ି ନିୟମ କରିଛନ୍ତି, ରାଜଧାନୀରେ ଯେଉଁମାନଙ୍କର ପରିବାର ଖଣ୍ଡିଏ ଲେଖାଏଁ ଘରଜମି ପାଇଛନ୍ତି ସେମାନେ ଆଉ ସରକାରୀ ଘରଜମି ପାଇବାରୁ ବଞ୍ଚିତ ହେବେ । ମାତ୍ର ସୁଦାମ ବାବୁଙ୍କର ତିନି ଖଣ୍ଡି ଘର ରାଜଧାନୀରେ ଥିଲେ ମଧ୍ୟ ସେ ଶପଥ କରି ସତପାଠ କରିଛନ୍ତି ଯେ ତାଙ୍କର କିମ୍ବା ତାଙ୍କ ପରିବାରର ଖଣ୍ଡିଏ ସୁଦ୍ଧା ଜମି ନାହିଁ ରାଜଧାନୀର ଖଣ୍ଡମଣ୍ଡଳରେ । ଅତଏବ ସୁଦାମବାବୁ ସତିଆ । ତାଙ୍କର ତିନି ତିନିଟା ଘର ଅଛି ବୋଲି ଯେଉଁମାନେ କହୁଛନ୍ତି ସେଗୁଡ଼ାକ ସବୁ ଡାହା ମିଛୁଆ ।

ବଡ଼ବାବୁଙ୍କର ଘର କମ୍ପାନୀ ଭଡ଼ାରେ ନେଇଚି । ହାତଖୋଲି ଭଡ଼ା ଦଉଚି କମ୍ପାନୀ । ବଡ଼ବାବୁ ନିଜ ଘରେ ନ ରହି ସରକାରୀ ଘରେ ରହୁଛନ୍ତି । କାରଣ ସେ ଶପଥପାଠ କରିସାରିଛନ୍ତି—ଏତଦ୍ୱାରା, ମୁଁ ଅମୁକ ଧର୍ମାବ-ତାରଙ୍କର ଇଜ୍‌ଲସରେ ଶପଥ କରି କହୁଛି ଯେ ମୋର କୌଣସି ଘର ନାହିଁ, ମୁଁ ଘରଛେଉଣ୍ଡ ।

ନେତା ଆପଣେ କେତେ କଥାର ମାଲିକ । କିନ୍ତୁ ସେ ସତ୍ୟପାଠ କରିସାରିଛନ୍ତି—ହେ' ଜନତା ଜନାର୍ଦ୍ଦନ ! ସମାଜସେବା ସମ୍ପତ୍ତି ଛଡ଼ା ମୋର

ଆଉ କିଛି ସମ୍ପତ୍ତି ନାହିଁ–ମୁଁ ଏକଥା ହଲପ୍ କରି କହୁଚି । ତେଣୁ ସେ ସତିଆ ନେତା । ଆଉ ତୁମେ ଗୁଡ଼ାକ ଚୁଗୁଲିଆ ।

ସତ୍ୟପାଠ ଆଜି କାଗଜର କାଳି । ସତ୍ୟବୟାନ ବର୍ତ୍ତମାନର ସମାଜରେ ଏକ କାଗଜୀୟ ପରମ୍ପରା । ସତ୍ୟ ନାମକ ଡାମ୍ପଣରେ ଯାହାକୁ ଯେତେ ଫୋଡ଼ିଲେ ଆଜି ଡାମ୍ପଣ ଭଙ୍ଗିଯିବ ବୋଧେ, କିନ୍ତୁ କେହି ସେଥିରେ ଫୋଡ଼ିହେବେ ନାହିଁ ହୁଏତ !

ସତ୍ୟର ଟାଣପଣକୁ ପଙ୍କପରି ଭୁଟୁଭୁଟୁ ଲତପତ କରୁଥିବା, ସତ୍ୟକୁ ବାରମ୍ବାର ଅସୁନ୍ଦର ଅଶ୍ଳୀଳ କରୁଥିବା ଏ ପଚମାନ ସମାଜରେ କେଉଁମାନେ ମଣିଷ ପଦବାଚ୍ୟ ସତରେ ? କେଉଁମାନେ ସୃଷ୍ଟି କରିବେ ଏ ସତ୍ୟ ବିବର୍ଜିତ ସମାଜକୁ ?

ଆଜିର ସବୁ ସତ୍ୟପାଠ ପ୍ରକୃତରେ କେତେମାତ୍ରାରେ ସତ ! ସତ କ'ଣ ଆଜି ସତରେ ଟାଣ ?

(୨୪–୭–୮୫)

# ବାନାମ୍ବର ଉପାଖ୍ୟାନ

ଗତବର୍ଷ ଏଇ ସମୟକୁ ଆସିଥିଲ ଏକୋଇଶଟି ଚିଠି । ଏବର୍ଷ କିନ୍ତୁ ଅଠର ।

ଠିକ୍ ଏଇ ସମୟରେ ବାନାମ୍ବରଙ୍କ ନାଁରେ ଗୁଡ଼ାଏ ଚିଠି ଆସି ପହଞ୍ଚେ । ବର୍ଷ ବର୍ଷ ଧରି ଭୁଲିଯାଇଥିବା ସାଙ୍ଗ, କେଉଁ ଆଳିଆ ଲେଖାରେ ବାଳିଆ ବନ୍ଧୁ ବାନ୍ଧବ ଆଦି ଯେମିତି ଖୁବ୍ ଜୋରରେ ମନେପକାନ୍ତି ବାନାମ୍ବରମାନଙ୍କୁ ଏଇ ସମୟରେ ।

ଅତି ପରିଚିତ ଚିହ୍ନାଜଣା ଲୋକଙ୍କଠାରୁ ଯେ ସେ ବିଷୟକ ଚିଠିପତ୍ର ନ ଆସେ ବୋଲି ନୁହେଁ,କିନ୍ତୁ ଠିକ୍ ବର୍ଷର ଏଇ ସମୟରେ ହିଁ ଯେମିତି ମନେ ପଡ଼ିଯାଏ ଅନେକଙ୍କର– ଯେ ଆମ ବାନାମ୍ବରକୁ ଚିଠି ଖଣ୍ଡିଏ ଦେଲେ ସେ ନିଶ୍ଚେ ଦେଖିବ । ଚିଠି ସହିତ ଲେଖାଥାଏ, "କ'ଣ ହେଲ ମତେ ନିଶ୍ଚେ କାନ କରେଇବୁରେ ବାନାମ୍ବର । ଅପେକ୍ଷାକରି ରହିଲି" ।

ବାନାମ୍ବର ସତେ ଯେମିତି ଗ୍ରହି ବସିଚି ଏଭଳି ଚିଠିମାନଙ୍କୁ । ସେ କାମଗୁଡ଼ିକ କରିବା ଯେମିତି ବାନାମ୍ବରର ବୃତ୍ତିଗତ ଧର୍ମ ।

ଚିଠିରେ ଭଲ ମନ୍ଦ ଦେହପା,ର ବାର୍ତ୍ତା ଥାଏ । ଆଉ ଥାଏ ଏଣୁ ତେଣୁ କଥା । କିନ୍ତୁ ଅସଲ ବାଟିନି ହଉଚି ସେଇ ସଂଖ୍ୟାପୁଞ୍ଜିକ, ଯାହାକୁ ଓଡ଼ିଆ ଭଷାରେ ବି କୁହାଯାଏ ରୋଲ ନମ୍ବର । ପୁଅ, ପୁତୁରା, ଭଇ, ଭଉଣୀ, ଭଣଜା, ଭାଣିଜୀଠାରୁ ଆରମ୍ଭକରି ଯେତେ ସମ୍ପର୍କ ଅଛି ସବୁ ସମ୍ପର୍କର ମଙ୍ଗଳକାମନା କରି ଭିନ୍ନ ଭିନ୍ନ ଅଭିଭବକଙ୍କଠାରୁ ଆସିଥାଏ ଭିନ୍ନ

ଭିନ୍ନ ଚିଠି । ଚିଠିର ସାରମର୍ମ ସେଇ ଗୋଟିଏ– ତମ ସେଠି ଆମ ଅମୁକର ଖାତା ପଡ଼ିଚି । ଟିକେ ଦେଖିବ ।

କାହାର ପ୍ରଥମ ଶ୍ରେଣୀ ପାଇବା ପିଲା, ସେ ପ୍ରଥମ ଦଶ ଜଣରେ ଯିବା ଉଚିତ୍ । କାହାର ପୁଅଟି ପ୍ରଥମ ଶ୍ରେଣୀରେ ପାଶ୍ କରିବା ନିହାତି ଦରକାର । କେହି ପିଲାଟାର ଅନର୍ସ କେମିତି ରହିଯାଉ ବୋଲି ଅନୁରୋଧ କରିଛି ତ କାହାର କିଛି ନହେଲେ ଦ୍ୱିତୀୟ ଶ୍ରେଣୀଟା ହୋଇଯିବା ଆବଶ୍ୟକ । ଆଉ କେଉଁଟା ବହୁତ ଦୟନୀୟ ଘଟଣା– ପାଞ୍ଚଥର ଫେଲ୍ ହେଲାଣି, ଏଥରକ ତମେ କିନ୍ତୁ ନିଶ୍ଚେ ଟିକେ ଦେଖିବ । ଭରସା ରଖିଲି ।

ଚିଠି ଆସେ ଯେତିକି, ତା'ଠାରୁ ଦୁଆର ପହଞ୍ଚା ଅନୁରୋଧ ଢେର ଅଧିକ । ଏଣୁ ତେଣୁ ଦୁଇପଦ ଭଲମନ୍ଦ ପଚାରି ଦାନ୍ତ ନେଫେଡ଼ି ଭଦ୍ରଲୋକ ଚିରିକୁଟି ଖଣ୍ଡିଏ ଗୁଞ୍ଜି ଦିଅନ୍ତି ହାତରେ । ବାରମ୍ବାର ସେଇ ନିଲଜ ଅନୁରୋଧ–ଏତିକି ନମ୍ବର ଯେମିତି ରହେ ।

ବନ୍ଧୁ ବାନ୍ଧବଙ୍କଠାରୁ ଅନୁରୋଧ । ଭାଇ ବିରାଦର କୁଟୁମ୍ବ ଲୋକଙ୍କଠାରୁ ଅନୁରୋଧ । ଡ଼ି.ପି.ଆଇ. ଅଫିସ୍‌ବାଲାଙ୍କଠୁ ଅନୁରୋଧ । ସେକ୍ରେଟେରିଏଟ୍ ଲୋକଙ୍କଠାରୁ ଅନୁରୋଧ । ବିଶ୍ୱବିଦ୍ୟାଳୟ ହାକିମଙ୍କଠାରୁ ଆରମ୍ଭକରି ସାନ ବଡ଼ ଅମଲଙ୍କଠାରୁ ଅନୁରୋଧ । ସବୁ ଆଡୁ ଅନୁରୋଧର ସ୍ରୋତ । ମନ୍ତ୍ରୀଙ୍କ ଲୋକ ମଧ୍ୟ ଦୁଆରେ ଲଗେଇ ଦେଇପାରନ୍ତି ଗାଡ଼ି । ସମସ୍ତେ ଗୁହାନ୍ତି, ତାଙ୍କ ପିଲାଟି ପରୀକ୍ଷା ଖାତାରେ କିଛିମାତ୍ କରୁ । ନମ୍ବର କେତୁଟାତ କୋଉ ହାତରୁ ପଡ଼ିଯାଉଚି !

ଏଇମାନଙ୍କ ପାଖରେ ତା'ର କାମ । ତାକୁ ସମସ୍ତେ ହଇରଣ କରି ଦେଇ ପାରନ୍ତି, ସିଏ କା'ର ଅବା କ'ଣ କରିପାରେ ! ତା'ରି ବୃତ୍ତିର ଘରିକିରିରେ ତ ଦୁଇଶହ ଟଙ୍କିଆ ମୁଣ୍ଡବି ଅନେକ । ନୂଆ କଲେଜ ଖୋଲି ମାତ୍ର ଦୁଇଶହ ବା ଅଢ଼େଇ ଶହ ଟଙ୍କା ଦରମା ଦେଇ ଅଧ୍ୟାପକଟିଏ ଛେଳି ଖୁଣ୍ଟରେ ବାନ୍ଧିବାପାଇଁ ସଚେତନ ସମାଜସେବୀ ମଣିଷ ଆଜି ସବୁଆଡ଼େ । ମାଷ୍ଟରଟାଏ । ମାଟି ଗୋଡ଼ିଟାଏ ଯେମିତି । ଅତଏବ ଖାତା-ପାଇଚି ବୋଲି, ମାଗ୍ଣ କେତୁଟା ନମ୍ବର ସେ ବଢ଼େଇଦେବା ଉଚିତ ନୁହେଁ କାହିଁକି ? ନୀତି ହେଉ କି ଅନୀତି ହେଉ ।

ବାନାମ୍ବରଟିଏ ହଡ଼ବଡ଼େଇଯାଏ ଚିହ୍ନା ଚିହ୍ନା ମୁହଁଙ୍କର ହାଉ ହାଉରେ । ଆଖି ଆଗରେ ତାର ନୈତିକତାର ପତଳା ପରଦାଟି ଚହଲିଯାଏ ବାରମ୍ବାର । ବର୍ଷସାର ଅଲୋଡ଼ା, ଅଦରକାରୀ ବ୍ୟକ୍ତିତ୍ୱରେ ତା'ର ଅମଲପଣର ନିଆଁ-ଗିଳା କଲମଟି ଭୁଲ କରିବାକୁ ପଛାଏ ନାହିଁ ବେଳେ ବେଳେ । ସବୁ ବାନାମ୍ବର ଯେ ସମାନ ନୁହନ୍ତି ସେ କଥା ସତ । କିନ୍ତୁ ମାନିବାକୁ ପଡ଼ିବ,

ସାତକୁ ସତୁରୀ କରୁଥିବା ବାନାମ୍ବର ଆଜିକାଲି କିଛି କମ୍ ନାହାନ୍ତି ଶିକ୍ଷା ଜଗତରେ ।

ସମସ୍ତେ ଜାଣନ୍ତି, ଏମିତି ଧରାଧରି କରି ଖାତାରେ ନମ୍ବର ବଢ଼େଇବା ଏକ ଜଘନ୍ୟ କାରବାର । ଯେଉଁ ପରୀକ୍ଷକ ଏଥିରେ ସଂଶ୍ଳିଷ୍ଟ ସେ ଯେ ଶିକ୍ଷକ ପଦବାଚ୍ୟ ନୁହନ୍ତି, ତାହା ଅବଶ୍ୟ ସ୍ୱୀକାର୍ଯ୍ୟ । ଶିକ୍ଷାର ନିକିତି ଯେଉଁ ସମାଜରେ କଳଙ୍କିତ, ସେ ସମାଜ ଯେ ହୀନପ୍ରଭ ଓ ବିଭ୍ରାଟପୂର୍ଣ୍ଣ ତାହା ଇତିହାସରେ ପରୀକ୍ଷିତ । ତଥାପି ଆଜି ଆମର ପ୍ରତ୍ୟେକ ଶିକ୍ଷିତ ଲୋକ ଏହାର ଗୁରୁତ୍ୱ ଉପଲବ୍ଧି କରିବାକୁ ଅନିଚ୍ଛୁକ ଯେମିତି ।

ଅତୀତରେ ଶିକ୍ଷକଟି ହୁଏତ ଥିଲା ଏକ ଗଣମାନ୍ୟ ବ୍ୟକ୍ତି । ପଦାର୍ଥ ବୈଭବରେ ବଳୀୟାନ ନ ହେଲେ ମଧ୍ୟ ଜ୍ଞାନ ଗରିମାର ଉତ୍କର୍ଷତା ଯୋଗୁଁ ସେ ଅବଶ୍ୟ ହୋଇଥିଲା ନମସ୍ୟ । କଥା ପଡ଼ିଲେ, ଶୁଣାଯାଉଥିଲା– "ଓ' ସେ ଅମୁକତ, ନାଇଁରେ ବାବା ବଡ଼ ନୀତିବାନ ଲୋକ ସିଏ । ତା'ଙ୍କୁ ଏକଥା କିଏ କହିବ ।" କିନ୍ତୁ ବର୍ତ୍ତମାନର ପଦାର୍ଥ ସଚେତନ ସମାଜରେ କ୍ଷମତା ଓ ଧନର ଅଭୂତପୂର୍ବ ଗୁରୁତ୍ୱ ହେତୁ ଶିକ୍ଷକଟି ଏକ ସାଧାରଣ କର୍ମଚାରୀ । ସେ ଆଜ ଗୁରୁର ଭୂମିକା ଗ୍ରହଣ ନ କରି, ଅଧସ୍ତନ କର୍ମଚାରୀର ଭୂମିକାରେ ଅଧିଷ୍ଠିତ ଆଜିର ଶିକ୍ଷକ, କେତେ ମାତ୍ରାର ଜ୍ଞାନୀ ଅବା ।

ବିଗତ କାଳରେ ପଦାର୍ଥବୋଧ, ଏତେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ନଥିଲା ବୋଲିତ ଜ୍ଞାନୀ ଶିକ୍ଷକଟି ହିଁ ଥିଲା ସମାଜର ସମ୍ମାନନୀୟ ବ୍ୟକ୍ତି, ହେଲେ ଆଜି ? ତା'ର ନିଷ୍ଠାପାଇଁ କେଉଁ ପ୍ରେରଣା ଅବା ଅଛି ତା' ଆଗରେ ବର୍ତ୍ତମାନ !

ଯେ କେହି ହୋଇପାରୁଛି ଶିକ୍ଷକ । ଯେ କେହି ଅଧ୍ୟାପକ । ଯେ କେହି ଦେଖିପାରେ ଖାତା । ଯେତେ ଯିଏ ନମ୍ବର ବଢ଼େଇ ଦେଇପାରେ, ଯେ କୌଣସି ଖାତାରେ । ବଗଦ ରଖୁଥିବା ଖାତା ଦେଖାଳୀ ହୁଏତ ଉପକାର ପାଇବ କାହା ପାଖରୁ, କିନ୍ତୁ ଏସବୁ ଏଡ଼ାଇ ନୀତିବାନ ହେବାକୁ ଚେଷ୍ଟା କରୁଥିବା ବାନାମ୍ବର ନିଶ୍ଚୟ ଶୁଣିବ–"ଏକୁଟିଆ ଅଧ୍ୟାପକ ହେଇଚି ଇଏ । ଶଳା, ହାତରୁ ଯେମିତି ନମ୍ବର୍ ଗୁଡ଼ାକ ପଡ଼ିଯାଉଚି ।"

ଏଭଳି କଥା ସାଧାରଣ ଲୋକଟିଏ କହିଲେ ବାନାମ୍ବର ଶୁଣିଯାଇ ଆଣ୍ଡ ହୋଇ ରହିପାରେ, ମାତ୍ର ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ ମେମ୍ବର ଯେତେ-ବେଳେ ଏମିତି କହନ୍ତି ?

ଲୋକେ କହୁଛନ୍ତି–କିଏ ଅପ୍ରିୟ ହୋଇ ନୀତିବାନ ହେବାକୁ ଚାହୁଁଚି ଏ ସୁବିଧା–ଭଠା ସମାଜରେ ! ଯା'ବୋଲି ବାନାମ୍ବର ନୀତିବାନ ନ ହେବ ଇଏ କ'ଣ ଉଚିତ କଥା !

ଏବେ କର୍ତ୍ତୃପକ୍ଷ ବ୍ୟକ୍ତି ବିଶେଷଙ୍କ ନିକଟକୁ ଖାତା ନ ପଠେଇ ଦୁର୍ନୀତି ରୋକିବା ପାଇଁ କେନ୍ଦ୍ରୀୟ ମୂଲ୍ୟାୟନ କରୁଛନ୍ତି । ସେତିକିବେଳେ ବାନାମର ଆସିଥିଲା ଖାତା ଦେଖା କେନ୍ଦ୍ରକୁ । ତାଏରୀରେ ଚିପି ଆଣିଥିଲା ଦେଢ଼ଶହ ସରିକି ରୋଲ୍ ନମ୍ବର । ଦେଖାଗଲା କେନ୍ଦ୍ରସାରା ଯା' ପାଖକୁ ତା' ପାଖକୁ ବୁଲି ଲଇଁପଡ଼ି କ'ଣ ସବୁ କହୁଚି ବାନାମର । କିଏ ଜଣେ କହିଲା– ଇଏ ସବୁ କ'ଣ ହଉଚି ବାନାମର ! ଏଗୁଡ଼ା କ'ଣ ଭଲ କଥା !

ବାନାମର ସେଇ ଲଇଁ ପଡୁଥିବା ଅବସ୍ଥାରେ ଉତ୍ତରକଲା–ଭଇ ଗତଥର ଆମ କଲେଜରୁ ସାତଜଣ ପାଶ୍ କରିଛନ୍ତି । ସେକ୍ରେଟେରୀ କହିଛନ୍ତି, ଯଦି ଏଥରକ ଶତକଡ଼ା ଷାଠିଏ ପାଶ୍ ନ କରନ୍ତି, ତେବେ ବାନାମର ବାବୁ, ଆପଣଙ୍କ ଚାକିରୀ ଛୁଟି ।

(୬-୮-୮୪)

## ଭିନ୍ନ ପରିଚୟ

ବସ୍ ଭିତରେ ପ୍ରାଣାନ୍ତକ ଚୂଣାଚୂର୍ଣ୍ଣି । ଯେଉଁଠି ମନ ସେଇଠି ଅଟକୁ ଥାଏ ବସ । ତଥାପି ଅନେକ ଗୁଡ଼ିଏ ରହଣି ସ୍ଥାନରେ ଅଟକିବା ସତ୍ତ୍ୱେ ପୁଣି ଥରେ ହଇଚଇରେ ଫାଟି ପଡ଼ୁଥିବା ବସ୍‌ଟି ଅଟକିଲା ଆଉ ଏକ ଷ୍ଟପେଜ୍‌ରେ । କେତେ ଲୋକଙ୍କ ଭିତରୁ, ହାତ ଟେକି ଅପେକ୍ଷା କରିଥିବା ଜଣେ ନିଶବନ୍ତ ଲୋକ ମାଡ଼ି ଆସିଲେ ଆଗକୁ । ହାଁ ହାଁ ଓଃ ଓଃ ଆଦି କୌଣସି କଥାକୁ ଖାତିର୍ ନ କରି କ୍ଲିନର୍ ବାପୁଡ଼ାକୁ, କୌଣସି ବାଡ଼ର ଅଳଗୁଣି ପରି ଗୋଟିଏ କଡ଼କୁ ଟେକି ଦେଇ ମୂଷାଣ୍ଡି ହୋଇ ପଶି ଆସିଲେ ଭିତରକୁ ।

ଦୁଇ ଥର ହୁଇସିଲ୍ ପରେ, ବାତଗେଗୀ ପରି ଧଡ଼ ଧଡ଼ କିଛି ଥର କମ୍ପିଯାଇ ବସ୍‌ଟି ଚକା ଓଟାରିଲା ଆଗକୁ ।

ବସ୍ ଭିତରେ, ଆଉ ଗୋଟିଏ ମାତ୍ର ଅଧିକ ପାଦ ଥାପିବାକୁ ଥାନ-ନାହିଁ, ଅଥଚ ସେ ନିଶୁଆ ଭଦ୍ରଲୋକ ସ୍କ୍ରୁ ଟାଇଟ୍ କଲାପରି ଭିତରକୁ ପଶିଲେ ।

କାହାର ପାଦ ଉପରେ ବୋଧେ ତାଙ୍କର ଅପେକ୍ଷାକୃତ ସବଳ, ଶକ୍ତ ଏବଂ ଉଦ୍ଧତ ପାଦଟିଏ ମାଡ଼ିବସିଲା । ଅତଏବ ଚିତ୍କାର ସହ ଆହତ ଯାତ୍ରୀଙ୍କ ତୁଣ୍ଡରୁ ବାହାରି ପଡ଼ିଲା—"ମଣିଷ ନା ପଶୁମ ! କ'ଣ ମଣିଷ ଦେଖାଯାଉନି କି ?"

ସେଇଥିରୁ ଆରମ୍ଭ ହେଲା ବଚସା, ପାଟିତୁଣ୍ଡ, ହୋ-ହଲ୍ଲା । କିଛି ସମୟ ଅଟକି ଗଲା ଗାଡ଼ିଟି ।ପଡ଼ିଲା ଉଠିଲା ସେ ଖଣ୍ଡମଣ୍ଡଳ । ଆଉ ଟିକିଏ

ହୋଇଥିଲେ, ଦୁଇ ଚାରିଟା ଦାନ୍ତ ନିଶ୍ଚୟ ଗଳି ପଡ଼ିଥାଆନ୍ତା ସେଇ ଝାଙ୍ଗ-ପିଟା ବସ୍‌ର ଚଟାଣରେ ।

ତଥାପି ବେଶ୍ କିଛି ସମୟ ପର୍ଯ୍ୟନ୍ତ ଟକ୍‌ମକ୍ ଫୁଟୁଥିବା ଆକ୍ଷେପବିଦ୍ଧ ବିଶ୍‌ବାନ୍ ଭଦ୍ରବ୍ୟକ୍ତି ପାଟିକରି ଚାଲିଥିଲେ । ତାଙ୍କର ଗର୍ଜନ ବୁଝାଇ ଦେଉଥାଏ ଯେ ସେ ଜଣେ ମଣିଷ ଏବଂ ତାଙ୍କୁ ପଶୁବୋଲି ସମ୍ବୋଧନକରି ପାଦାହତ ଲୁତୁପୁତୁ ସହଯାତ୍ରୀ ନିଜେ ପଶୁତ୍ୱର ପ୍ରମାଣ ଦେଇଛନ୍ତି ।

"କିଏ ଜାଣେ ଗହଳି ଭିତରେ କାହା ପାଦ କେତେବେଳେ ମାଡ଼ି ହୋଇଯିବ, ଏତେ ସଉକିନିଆ ଯିଏ ସିଏ ଶଳା କାହିଁକି ପବ୍ଲିକ୍ ବସ୍‌ରେ ଉଠିବ !"—ନିଶ ଚମକାଇ ବାରମ୍ବାର ଏଇ ଧାଡ଼ିକ ସେ ଦୋହରାଇ ଚାଲିଥିଲେ ବସ୍ ଭିତରେ । କିଏ ଶୁଣୁଚି କାହାକୁ !

କିଛି ସମୟ ପରେ ମୁଁ ବସିଥିବା ତିନି ଜଣିଆ ସିଟ୍‌ରୁ ଜଣେ ଓହ୍ଲେଇ ଯିବାରୁ ଉଲ୍ଲିଖିତ ଭଦ୍ରବ୍ୟକ୍ତି ଧାଉଁକରି ମାଡ଼ି ବସିଲେ ଆମ ପାଖର ଜାଗାଟିକୁ । ଯେମିତି ଏକ କୁଇଣ୍ଟାଲ୍‌ର ଧାନ ବସ୍ତାଟିଏ ଆଉଜି ପଡ଼ିଲା ଗୋଟିଏ ପଟରୁ । କଥାବାର୍ତ୍ତା ପ୍ରସଙ୍ଗରେ ମୋ' ସହ ବସିଥିବା ଯାତ୍ରୀ ବନ୍ଧୁ ତା'ଙ୍କୁ ଟିପ୍‌ପଣୀ କଲେ—ଆଜ୍ଞା ! ଆପଣଙ୍କ ସ୍ୱରଟା କିନ୍ତୁ ବାଘ ଭଳିଆ । ନିଶ ସାଙ୍ଗକୁ ସ୍ୱରଟା ଆପଣଙ୍କର ଖୁବ୍ ମାନୁଚି ।

ଏଇ ପଦକରେ, ଖୁବ୍ ପ୍ରସନ୍ନ ଦେଖାଗଲେ । ନିଶ ସମେତ ପହିଲ୍-ମାନ୍‌ମନ୍ୟ ନିଶପୁଷ୍ଟ 'ସେ' ।

ଟିକିଏ ନମ୍ର ହୋଇଯାଇ, ସେ ଏଥର ଭଦ୍ରାମି ଫେରାଇଲେ—ନାଇଁ ଆଜ୍ଞା, ଏମିତିରେ ମୋର ଟିକେ ମୋଟା ସ୍ୱର । ଆଉ ଜୋର୍‌ରେ ପାଟିକଲେ ଟିକିଏ ରଗଡ଼ା ଶୁଭେ । ଏତକ କହି, ସେ ଖୁବ୍ ସନ୍ତୋଷରେ ହସିଲେ ଆମକୁ ଚାହିଁ ।

ମୁଁ ଭାବୁଥିଲି, ବାଘଟି କେଉଁ ଦିନଠାରୁ ମଣିଷ ହେଲା ! ଏଇ ଟିକିଏ ସମୟ ତଳେ, ଜଣେ ପଶୁ କହି ଦେବାରୁ ଖୁବ୍ ବିରୋଧ କରୁଥିବା ଲୋକ ହଠାତ୍ ବାଘସହ ତୁଳନୀୟ ହେବା ମାତ୍ରେ କେତେ ଗଦ୍‌ଗଦ୍ ମନେକରୁଛନ୍ତି ସତେ !!

ମଣିଷର ପଶୁବୋଲି ସମ୍ବୋଧିତ ହେବାରେ ଘୃଣା । ମାତ୍ର ବାଘ ନାଁ ପାଇବାରେ କେତେ ପୌରୁଷ ! ଦୁର୍ଯ୍ୟୋଧନଙ୍କୁ, ଭୀଷ୍ମ ଦେବଙ୍କ ପରି ମହାଯୋଦ୍ଧା ମଧ୍ୟ ପୁରୁଷ ବ୍ୟାଘ୍ର ବୋଲି ସମ୍ବୋଧନ କରିଥିବାର ନମୁନା ମହାଭାରତ ପୃଷ୍ଠାରୁ ମିଳେ ।

ପୁରୁଷ-ବ୍ୟାଘ୍ର ବା ପୁରୁଷ-ସିଂହ ବୋଲାଇ ହେବାରେ ଯେମିତି ଅନନ୍ୟ ପୌରୁଷ !

ହେଲେ କେହି କାହାକୁ ଗଧ, ଓଧ, ଗାଡ଼ଭଲ୍ଲ ବା ମାଙ୍କଡ଼ ବୋଲି ସମ୍ବୋଧନ କରି ଦେଲେ କଥା ସରିଗଲା । 'କାରଣ, ପଶୁମାନଙ୍କ ଭିତରେ ଅମଲା ଶ୍ରେଣୀର ସ୍ତର ମଧ୍ୟ ଠିକ୍ କରି ସାରିଛନ୍ତି ମଣିଷମାନେ ! ସିଂହ ରଜା, ବାଘ ମନ୍ତ୍ରୀ, ଭାଲୁ କଟୁଆଳ, ବିଲୁଆ ଚାର ଏବଂ ଠେକୁଆ ଦୂତ ଇତ୍ୟାଦି ।

କେବଳ ମଣଷମାନେ ଯେ ପଶୁ ନାଁରେ ଚିହ୍ନିତ ହେବାକୁ ଏକ-ତରଫାଭାବେ ଇଚ୍ଛୁକ, ସେପରି ନୁହେଁ । ଅନେକ ମାନବେତର ପ୍ରାଣୀଙ୍କୁ ମଧ୍ୟ ମଣିଷ ଦାନ କରିଛି, ସେମାନଙ୍କର କେତେକ ମାନବୀୟ ସମ୍ମାନାସ୍ପଦ ନାମ । ଯଥା–ଡାକ୍ତର ମାଛ (ସର୍ଜନ ଫିସ୍), ସନ୍ନ୍ୟାସୀ ସିଲ୍ (ମଙ୍କ୍ ସିଲ୍), ସୈନିକ କଙ୍କଡ଼ା (ସୋଲଜର୍ କ୍ରାବ୍), ସଚିବ ପକ୍ଷୀ (ସେକ୍ରେଟାରୀ ବାର୍ଡ଼) ଇତ୍ୟାଦି ।

ଏ ଯେମିତି ମଣିଷ ଓ ଅନ୍ୟ ପଶୁପକ୍ଷୀଙ୍କ ସହ ଭବର ସାହିତ୍ୟ !

ମାତ୍ର ଦୁଃଖ ଏତିକି ଯେ କେତେକ ଜନ୍ତୁଙ୍କ ସହ ତୁଳନୀୟ ହେବାରେ ମଣିଷର ସାଙ୍ଘାତିକ ପ୍ରତିକ୍ରିୟା ସୃଷ୍ଟି ହୁଏ । ଆମ ଦେଶରେ ଘୁଷୁରୀ ବା ଗଧ ସହିତ ତୁଳନୀୟ ହେଲେ କେଉଁ ଲୋକ ଅବା ବିରୋଧ ନ କରିବ ? ଅବଶ୍ୟ କବିସୂର୍ଯ୍ୟ, ଜଗନ୍ନାଥଙ୍କୁ ସାପ ବୋଲି କହି ବ୍ୟାଜସ୍ତୁତି କଲଭଳି କେହି ସେଭଳି ଅଳଙ୍କାର ପ୍ରୟୋଗ କରୁଥିଲେ କଥା ଦୋଷଗ ।

ଇଉରୋପ ମହାଦେଶରେ ବୈଜ୍ଞାନିକମାନେ ଗବେଷଣା ପାଇଁ ବ୍ୟବହାର କରୁଥିବା ମୂଷା ଜାତୀୟ ଏକ ପ୍ରାଣୀ ହେଲା 'ଅପୋସମ' । ଆମେରିକାରେ 'ଅପସୋମ'କୁ ନେଇ କେତେକ ରୂଢ଼ିପ୍ରୟୋଗ ମଧ୍ୟ ରହିଛି । ଫୁଟ୍‌ବଲ୍ ଖେଳବେଳେ ଛଟାଗାଳି, କେହି ଖେଳାଳି ପଡ଼ିରହିଥିଲେ ତାକୁ ଯଦି ସଙ୍ଗୀ ଖେଳାଳି "ପୋସମ୍ ସାଜିବା ବନ୍ଦକର" ବୋଲି କହେ, ତେବେ ସେ କିଛି କ୍ଷୁର୍ଣ୍ଣ ହୁଏନା,ବରଂ ଖୁସି ହୁଏ । ମାତ୍ର ଶ୍ରେଣୀକୁ ଆସିପାରି ନ ଥିବା କେହି ଛାତ୍ରକୁ ଯଦି ତା'ର ସହପାଠୀ ଜଣେ କହେ, "କିରେ କ'ଣ ପୋସମ୍ ସାଜିଥିଲୁ" ; ତେବେ ସେ ତାତି ଉଠିବାର ଯଥେଷ୍ଟ ହେତୁ ଅଛି । କାରଣ ପ୍ରଥମଟିର ଅର୍ଥ ଥଟ୍ଟା ଓ ଦ୍ୱିତୀୟଟିର ଅର୍ଥ ଅପମାନ ।

ଓଡ଼ିଶାରେ, ବାଘ ଉଦାହରଣଟି ଅବିକଳ ସେଇଭଳି । କେତେ-ବେଳେ ବାଘ ସମ୍ମାନ ସୂଚକତ କେତେବେଳେ ଅପମାନସୂଚକ । ବସ୍ ଭିତରେ ଆମର ସେ ନିଶୁଆ ଭଦ୍ରଲୋକ, ବାଘ ସହିତ ତୁଳନୀୟ ହେବାରେ ଦେଖାଗଲେ ଉଜ୍ଜ୍ୱଳ ହସ ହସ । ନିଶ ତାଙ୍କର ଦେଖାଗଲା ଅଧିକ ସ୍ପର୍ଦ୍ଧିତ । ଅଥଚ ତାଙ୍କୁ ସେଦିନ ଜଣେ ତୁଳସୀବଣିଆ ବାଘ ବୋଲି କହିଥିଲେ, ସେ ଘଟଣାସ୍ଥଳରେ କ'ଣ ଘଟାଇ ଥାଆନ୍ତେ ସେ'କଥା ସାଧାରଣରେ ଅନୁମାନ ସାପେକ୍ଷ ।

(୧୪–୮–୮୫)

## ନିଜକୁ ନିହତ କର

କଥାରେ ଅଛି ମଣିଷ, ମଣିଷ ହେବା ଖୁବ୍ କଠିନ । ମଣିଷ ଭିତରେ ଥିବା ମଣିଷ ପଣିଆଁ ସବୁ ମଣିଷଙ୍କ ପାଖରେ ଠିକ୍ ଭବରେ ନ-ଥାଏ ଯେମିତି ! କେଉଁଠି ମଧ୍ୟ ଥାଇପାରେ, ଆବଶ୍ୟକତାଠାରୁ ଢେର ଅଧିକ । ହେଲେ ମଣିଷ ଭଳି ମଣିଷଟିଏ ଖୋଜିପାଇବା ନିଶ୍ଚିତରେ କଷ୍ଟକର ।

ମଣିଷର ଅବସ୍ଥାଟି ନିକିତିର କଣ୍ଟାପରି ସଦା ଟଳମଳ । ଡାହାଣକୁ ଘୁଞ୍ଚିଲେ ଦେବତା, ବାମକୁ ଢଳିଲେ ପଶୁ । ପଶୁ ଓ ଦେବତା ମଝିରେ ମଣିଷଟି ଏକ ଆପାତସ୍ଥିତି । ଏଇ ମଣିଷ ଦେବତା ବି ପାଲଟି ପାରେ, ସାଜିପାରେ ମଧ୍ୟ ସବୁଠାରୁ ହିଂସ୍ରତମ ପଶୁ । ଉଭୟ ପଶୁତ୍ୱ ଓ ଦେବତ୍ୱର ଫେଣ୍ଟାଫେଣ୍ଟି ସମାହାର ଏଇ ଦ୍ୱିପଦ ବିଶିଷ୍ଟ ପ୍ରାଣୀ । ଏ ପ୍ରାଣୀ ଦସ୍ୟୁ ରତ୍ନାକର ହୋଇପାରେ, ହୋଇପାରେ ମଧ୍ୟ ବାଲ୍ମିକି । ଚଣ୍ଡାଶୋକ ହୋଇପାରେ, ହୋଇପାରେ ମଧ୍ୟ ଧର୍ମାଶୋକ । ପ୍ରାଣୀଭବରେ ସମସ୍ତ ଗୁଣ, ଯଥା : ପ୍ରବୃତ୍ତି, ସ୍ୱାର୍ଥ, କଷ୍ଟ ଓ ଜୀବନଇଛା ଆଦି ସମସ୍ତ ସାଧାରଣତାକୁ ଅବଦମିତ କରି ଏକ ଉତ୍ତରିତ ଉତ୍କର୍ଷରେ ମଣିଷ ନିଜ ଦେହରୁ ମାଂସ କାଟି ଅନ୍ୟର ଉପକାର ପାଇଁ ଶିବି ରଜାଙ୍କ ପରି ଦେବୋତ୍ତମ ପାଲଟି ପାରେ ।

ମଣିଷ କେବଳ ପଶୁ ନୁହେଁ । ମଣିଷ କେବଳ ଦେବତା ନୁହେଁ । ମଣିଷ ମଣିଷ । ମଣିଷ; ସ୍ନେହ, ପ୍ରେମ, ଦୟା, ଆଦର,କ୍ଷମା, ଭବପ୍ରବଣତା ଆଦି ଅନେକ ଇନ୍ଦ୍ରିୟାପ୍ଲୁତ ରସରେ ରସଘନ । ସେ ଭଲପାଏ । ଭଲ

ପାଇ ନିଜକୁ ଭୁଲିଯାଏ । ହଜାଇଦିଏ ନିଜକୁ । ପ୍ରେମରେ, ପ୍ରୀତିରେ ମଣିଷ ଜୀବନ ହରେଇ ଦେଇପାରେ । ପ୍ରୀତିପାଳନ ପାଇଁ ଦରକାର ପଡ଼ିଲେ ଅଙ୍ଗଛେଦନ କରି, କବନ୍ଧ ପରି ବଞ୍ଚିପାରେ ମଣିଷ । ଚକ୍ଷୁଦାନ କରି ଅନ୍ଧ ହୋଇ ଜୀବନକୁ ଆହୁରି ସରସ ସୁନ୍ଦର କରିପାରେ ଏଇ ପ୍ରୀତିଭୁକ୍ ପ୍ରାଣୀ ।

ସର୍ବସ୍ୱ ଦାନ କରିପାରେ ମଣିଷ । ସ୍ଥାବର, ଅସ୍ଥାବର, ଦେହ, ଦୀପ୍ତି ସମ୍ପତ୍ତି, ସସାଗର ଧରା ଆଦି ସବୁକିଛି ତୁଚ୍ଛକରି ମଣିଷ ପୌରାଣିକ ଯେ-କୌଣସି ଦେବତାଙ୍କ କୀର୍ତ୍ତିକୁ ମଧ୍ୟ ଅନାୟାସରେ କରି ଦେଇପାରେ ମଳିନ । ନିଜ ପୁତ୍ରର ମାଂସ ନିଜ ହାତରେ ରନ୍ଧି, ଅତିଥି ଚର୍ଚ୍ଚାକରି, ନିଜର ଜାବତୀୟ ସୁଖଶାନ୍ତି, ଦାମ୍ପତ୍ୟ, ବାତ୍ସଲ୍ୟ ସ୍ନେହର ସୁବର୍ଣ୍ଣଥାଳକୁ ଅନ୍ୟର ସୁଖ ପାଇଁ ଦୁଇ ହାତରେ ଅବିଶ୍ୱାସଭାବେ ଟେକି ଦେଇପାରେ; କେହି ଜଣେ କର୍ଣ୍ଣ, କେହି ଜଣେ ହରିଶ୍ଚନ୍ଦ୍ର । ନାକରେ, କାନରେ, ଛାତିରେ, ପାଦରେ କଣ୍ଟା ଫୁଟୋଉଥିବା ନିଜ ଜାତିର ପ୍ରାଣୀଙ୍କୁ ମଧ୍ୟ ମଣିଷ ଆଦର ଦୃଷ୍ଟିରେ ଗ୍ରହି, ମନରେ ଫୁଲ ଫୁଟେଇବା ପରି କହିପାରେ—"ହେ ଈଶ୍ୱର ! ଏମାନେ କ'ଣ କରୁଛନ୍ତି, ନିଜେ ଜାଣି ନାହାନ୍ତି । ଏମାନଙ୍କୁ କ୍ଷମା କରନ୍ତୁ ।"

ଦାର୍ଶନିକମାନେ କହିଛନ୍ତି—ମଣିଷ ଏକ ସାମାଜିକ ପଶୁ । ଏଭଳି ଏକ ପଶୁ ଏଇ ମଣିଷ, ଯିଏକି ପଶୁ ହୋଇ ମଧ୍ୟ ସମାଜ ନାମକ ଗୋଟିଏ ବିଶିଷ୍ଟ ସମାହାରରେ ନିଜକୁ ସୁନ୍ଦର ଏବଂ ସଙ୍ଗତଭାବରେ ଖାପ ଖୁଆଇ ରଖିପାରେ ।

ମାତ୍ର ମଣିଷ ଯେତେବେଳେ ଭୁଲିଯାଏ ତା'ର ସାମାଜିକ ସ୍ଥିତିକୁ ? ଯେତେବେଳେ ସମାଜର ସଂଯମ, ଶୃଙ୍ଖଳା, ସ୍ନେହ, ପ୍ରୀତି, ସହାବସ୍ଥାନ ଆଦି ସବୁକିଛି ବିସ୍ମୃତ ହୁଏ ମଣିଷର ? କ'ଣ ଘଟେ ସେତେବେଳେ ! କେଉଁ ପଶୁତ୍ୱର ଭୀଷଣ ଆବରଣରେ ମୂର୍ତ୍ତିମନ୍ତ ହୁଏ ମଣିଷ ସେଇ ସମୟରେ ?

ପଦାର୍ଥଟିଏ ତଳକୁ ଖସିବା ପରି, ଦେବତ୍ୱର ଉତ୍କର୍ଷତା ହାସଲ ଅପେକ୍ଷା ପଶୁବୋଧର ଅପକର୍ଷତା ଭିତରକୁ ମଣିଷଟିଏ ଖସି ପଡ଼ିବା ଅତ୍ୟନ୍ତ ସହଜ ଏବଂ ଥରେ ସେ ପତନ ଏ ଦ୍ୱିପଦ ବିଶିଷ୍ଟ ପ୍ରାଣୀଟିର ଅସ୍ଥିମଜ୍ଜାଗତ ହେଲେ, ପଶୁତ୍ୱ ହିଁ କେବଳ ବିରାଜମାନ କରେ ତା' ଦେହରେ । ରାକ୍ଷସ ପରି ସେ ମଣିଷ ଆହାର କରେ । ମଣିଷର ରକ୍ତକୁ ଏକ ସହଜ ତରଳ ଦ୍ରବ୍ୟ ପରି ସେ ଢାଳିଦିଏ ମାଟିରେ । ମଣିଷ ରକ୍ତର ରଙ୍ଗ ତାକୁ ହୋଲିଖେଳର କୌତୁକ ରଙ୍ଗ ପରି ଖେଳ ଓ ରୋମାଞ୍ଚର ସଉକ୍ ଭଳି ଲାଗେ ।

କେଉଁ ନରହନ୍ତା ସମ୍ରାଟ୍ ପରି; କେଉଁ ଯୁଦ୍ଧ ପିପାସୁ ରାଷ୍ଟ୍ର ନାୟକ ପରି ସେ ବୁଝିଯାଏ ଯେମିତି—"ହତ୍ୟା ହିଁ ପୌରୁଷ ଏବଂ ପୌରୁଷ ହିଁ ଶ୍ରେଷ୍ଠ ମାନବିକ ଧର୍ମ ।" ପୃଥିବୀର ସକଳ ଶାସ୍ତ୍ର, ସକଳ ସଂଯମ, ସକଳ

ଦେବତ୍ୱ, ତାକୁ ତୃଣ ପରି ଲାଗେ । ମଣିଷପଣିଆଁର ନିକିତି କଣ୍ଟାକୁ ସେ ଟାଣି ଧରେ ବାମ ଦିଗକୁ । ସେ ଯେମିତି ବାମ ଦିଗରେ ସବୁଠାରୁ ଉଚ୍ଚ ବିଗଟ ମଣିଷଟିଏ ।

ବାମପଟେ ପଶୁତ୍ୱର ବିସ୍ତୃତ ବଳୟ; ଦକ୍ଷିଣ ପଟେ ଦେବତ୍ୱର ଦୂରସ୍ଥ ଅଗମ୍ୟ ପିର୍ଚ୍ଛିଳ ପ୍ରସ୍ତ; ମଝିରେ ଇତସ୍ତତଃ ଶୀର୍ଣ୍ଣ ମଣିଷ । କେଉଁ-ପଟକୁ ଢଳିବା ସହଜ ତା' ପାଇଁ । ପଶୁତ୍ୱ ଓ ଦେବତ୍ୱର ଦୁଇଫାଳ ଯୋଡ଼ିରେ ଗଢ଼ା ତା'ର ଦେହ । ମଝିରେ ଦୂକ୍ ଦୂକ୍ ସ୍ୱାର୍ଥମୋହୀ ପିଣ୍ଡ । ଟଳ ମଳ ଅବସ୍ଥା । ସ୍ଥିତାବସ୍ଥାରେ ମଧ୍ୟ ସ୍ଥିର ହେବା ତା' ପାଇଁ କଷ୍ଟକର । ବାରମ୍ବାର ଢଳିପଡ଼ୁଛି ସେ ବାମକୁ ।

ଦିନକୁ ଦିନ ସଭ୍ୟ ହେଉଟି ମଣିଷ । ଅଲୌକିକ ଉଦ୍‌ଭବନରେ ନୂତନ ଦିଗନ୍ତମାନ ଉନ୍ମୋଚିତ ହେଉଛି ତା' ଆଗରେ । ଜୀବନର ଭିନ୍ନ ଭିନ୍ନ ବିଭାଗ ସହିତ, ସେ ଅଧିକ ପରିଚିତ ହେଉଛି ବେଳୁବେଳ । ପ୍ରକୃତିର ଗନ୍ତାଘର ସ୍ତର ସ୍ତର ହୋଇ ଫିଟିଯାଉଛି ତା'ର ବିଜ୍ଞାନୀ ସ୍ପର୍ଶରେ । ବିଶ୍ୱର କୁହୁକ ପେଡ଼ିକୁ ସେ ଫିଟାଇବାରେ ଲାଗିଛି ପାଦ ପରେ ପାଦ । ଅଥଚ କେଉଁ ମାନବୀୟ ଉତ୍କର୍ଷ ହାସଲ କରିଛି ସେ ଆଜି ? କେତେମାତ୍ରାରେ ଅଧିକ ମାନବିକ ପାଲଟିଛି ଏଇ ଆଧୁନିକ ମଣିଷ ବର୍ତ୍ତମାନ !

ଦେବତ୍ୱର ସନ୍ଧାନ ପାଇଁ ଆମର ଆଧୁନିକ ପୃଥିବୀବାସୀ ସତରେ କେତେ ମାତ୍ରାରେ ବ୍ୟାକୁଳ !!

ଇଥିଓପିଆରେ ଦୁର୍ଭିକ୍ଷ, ଆଫ୍ରିକାର କଳାଲୋକଙ୍କ ପିଠିରେ ଧଳା ହାତର ଚାବୁକ୍, ଲେବାନନ୍‌ର ବୋମାମାଡ଼ରେ କୁଢ଼ କୁଢ଼ କଅଁଳ ହାଡ଼; ଆଟ୍‌ଲାଣ୍ଟିକ ସମୁଦ୍ରର ନୀଳ ନୀରବ ଜଳରାଶିରେ କାହାର କିଛି ଦୋଷ କରି ନଥିବା ଶହ ଶହ ମଣିଷଙ୍କର ଶବ, ତୃତୀୟ ପୃଥିବୀର ଦେଶମାନଙ୍କରେ ଦାରିଦ୍ର୍ୟର ପଚ ପଚ ପାଣି । ଅଥଚ ମଣିଷ ସବୁ ଭୁଲି ଆଜି ପ୍ରସ୍ତୁତ କରୁଛି ଆଣବିକ ବୋମା । ବୈଜ୍ଞାନିକ କ୍ରମରେ; ଆଧୁନିକ ଭବେ ବଳୁଆ ହେଉଛି ଗୋଟେ ପଟର ମଣିଷ । ପ୍ରତି ମିନିଟ୍‌ରେ ପନ୍ଦର ନିୟୁତ ଟଙ୍କା ମିଲିଟାରୀ ଖର୍ଚ୍ଚ ହେଉଥିବେଳକୁ ପ୍ରତି ମିନିଟ୍‌ରେ ଭୋକ ଉପାସରେ ମରନ୍ତି ପନ୍ଦରଟି ଶିଶୁ ଆମ ଭିତରେ । କାହା ବିରୁଦ୍ଧରେ ମଣିଷର ଏ ପଣ ?

କେଉଁ ଉତ୍କର୍ଷତାରେ ଲାଗିଛି ଏ ଦ୍ୱିପଦ ପ୍ରାଣୀ ? ବାମକୁ ଢଳୁଥିବା ଏ ମଣିଷ, କେତେ ଦୂର ଯାଏଁ ବାମକୁ ଢଳୁଥିବ ଏମିତି ! ରାଷ୍ଟ୍ରର ରାଷ୍ଟ୍ର-ନାୟକମାନେ କେଉଁ ନିକିତି ଆଗରେ ଦଣ୍ଡାୟମାନ ଏବେ ! ?

ଏ ସବୁ ପ୍ରଶ୍ନ ମୁଁ ପଚାରୁଛି କାହାକୁ ?

୨୧ । ୮ । ୮୫

# କରମା କଷି

ଘୋଷଣାଟି ଶୁଣିସାରିବା ପରେ ନାରଣ ରାଉତେ ଦେଖାଗଲେ ଉଦ୍‌ଗ୍ରୀବ । ଖୁବ୍ ଗୋଟାଏ ଓରମାନ ଟାକୁରି ଉଠିଲା, ଛାତି ଭିତରେ ତାଙ୍କର ।

କୁଅକୁ ଝାଡ଼ି, କଛାକୁ ସଜାଡ଼ି, ସେ ଘର ଭିତର ପଟକୁ ମୁହଁ ବୁଲେଇ କହିଲେ–ଆଗୋ ! ଶୁଣୁଚ ! ମୁଁ ଆଜି ଉପରବେଳା ପ୍ୟାରେଡ଼ ପଡ଼ିଆକୁ ଯିବି । ପାଇକ ଆଖଡ଼ା ହବ ସେଠି । ତେଣୁ ରାତିକି, ତୁମ ମାଉସୀପୁଅ ଭାଇ ଘରକୁ ଆଠ ନମ୍ବର ଆଡ଼େ ଯିବାର ଯେଉଁ ଯୋଜନା ଥିଲା, ସେଇଟା ଆଜି କ୍ୟାନ୍‌ସେଲଡ୍ । ଆଉ ଦିନେ ଦେଖିବା ।

ଘରର ପ୍ରତିକ୍ରିୟା କ'ଣ ହେଲା, ଶୁଣିବାକୁ ରାଉତଙ୍କର ତର ନଥିଲା । ଖିଅର କାମ ଶେଷ ହେଲା । ତେଲ ମାଲିସ୍ ହେଲା ଦେହରେ । କାନରେ ଦି' ଟୋପା ପଡ଼ିଲା ଉଷୁମ ସୋରିଷ ତେଲ । ଅଞ୍ଜାକରି କାଟମାର୍କା ଗାଧୁଆଟାଏ ହେଲା । ମାଙ୍ଗୁ ସଜଡ଼ା ହେଲା ଦର୍ପଣ ଆଗରେ । ତା'ପରେ ଭତଗଣ୍ଡେ ନାକରେ କାନରେ ଗୁଞ୍ଜିଦେଇ, ପାଟିରେ ପାନଖଣ୍ଡେ ପୂରେଇ ପୂରେଇ ତରତର ସାଇକେଲରେ ସେ ଚକା ଗଡ଼େଇଦେଲେ ଅଫିସ୍‌କୁ । ଶୀଘ୍ର ଫେରିଲେ ହୁଏ ।

ରାଉତେ ଅମର ଅଉଲ ଓଡ଼ିଆ । ଆଉ ଆଉ ମାନେ ଢେର ଭେଜାଲରେ ପଡ଼ି ନିଜ ଷୋଳପଣକୁ ସିନା ବିଟାଳି ଦେଲେଣି, ହେଲେ ଏବେ ମଧ୍ୟ ନାରଣ ରାଉତେ ଉପରଓଳା ଅଫିସ୍‌କୁ ଫେରି ଚପାକଷ

ପଖାଳ କଂସାଏ ଖାଆନ୍ତି, ଆଉ ଖାଣ୍ଟି ଓଡ଼ିଆଙ୍କ ପରି ଜଗନ୍ନାଥ ଜଗନ୍ନାଥ କହି ଛୁଟିଦିନ ଦ୍ୱିପ୍ରହରରେ ଷାଠିଏ ନିଃଶ୍ୱାସ ନାଁରେ ଯାହେ ଘରିଘଣ୍ଟା ଶୁଅନ୍ତି ।

ଓଡ଼ିଆ କଥା ପଇଲେ ଠେକୁଆପରି କାନ ଡେରି ଦିଅନ୍ତି ସେ । ହସ ଗଳୁରି ଆସେ ତାଙ୍କ ପାନଖିଆ ମଳିନ ଓଠରୁ । କଥା କଥାକେ ସେ କହନ୍ତି—ଆରେ ଭାଇ ସେଦିନ ସିନା ଏବେ ନାହିଁ, ତଥାପି ଆମ ଓଡ଼ିଆ ପାଇକ ପୁଅଙ୍କ କଥା ଜାଣଚି ? ଜଗନ୍ନାଥ ବଳଭଦ୍ର ଶେଷକୁ ଦିନେ କହିଲେ ଆମେ ପାଇକ ବେଶ ହୋଇ ପୁରୁଷୋତ୍ତମ ରଜା ପାଇଁ ଯୁଝିବୁ । ଠାକୁରଙ୍କର ବି ପାଇକ ହବାକୁ ମନ । ପାଇକ ପୁଅଙ୍କର ଅତୀତ ଯୋଗ୍ୟତ ନୀଳଚକ୍ରରେ ନେତ । ଓଡ଼ିଶାର ମାନ ଏମିତି, ଓଡ଼ିଶାର ଦାନ ସେମିତି ।

ପାଞ୍ଚହାତ ଉଚ ଶରୀର । ଗଜା ଶାଳପରି ଗୋଡ଼ହାତ । ଉଞ୍ଚ ଦେଉଳପରି ଦେହ । ସେଇଭଳି ପାଇକପୁଅର ଆମେ ଦାୟାଦଟି ! ଆହେ ଆମେ ଡରିବୁ କାହାକୁ ।

—ଟିକେ କଥାରେ ଲାଗେ, ଏଇମିତି ପାଇକ ପାଇକ ହୁଅନ୍ତି । ପାଇକଟିଏ କେବେ ସେ ସ୍ୱଚକ୍ଷୁରେ ଦେଖିଥିଲେ କି ନାହିଁ କେଜାଣି ?

ସୁରେନ୍ଦ୍ର ମହାନ୍ତିଙ୍କ ନୀଳଶୈଳ ପଢ଼ିଲାବେଳେ ବକ୍ସୀଙ୍କ କଥା, ପାଇକଙ୍କ କଥା ପଢ଼ି କାନ୍ଦି ପକେଇଥିଲେ ସେ । ଆଉ ଆଜି ଏତେ ଯୁଗ-ପରେ ଯେତେବେଳେ ସରକାରଙ୍କ ତରଫରୁ ପ୍ୟାରେଡ଼ ପଡ଼ିଆରେ ପାଇକ ଆଖଡ଼ା ହେବାକୁ ଯାଉଚି ସେ ସେଠାରେ ହାଜର ନହେବେ କେମିତି !

ଢାଲ କରବାଲ ଚମକିବ । ଟିଡେ ଟିଡେ ଉଚ୍ଚର ବାଉଁଶ ଠେଙ୍ଗା-ମାନ ବୁଲିବ ବଳୁଆ ହାତରେ । ଯମଦାଢ଼, ଖଣ୍ଡା ଲଢ଼େଇ ହବ । ଚକ୍ରପରି ହେବ ବାଡ଼ି ଖେଳ । ମୁଠଣୀ ଉଞ୍ଚର ଘୋଡ଼ାମାନଙ୍କ ଉପରେ ସବାର ହୋଇ, ବଇରି ଗଞ୍ଜନ ନିଶ ଫୁଲେଇ ପାଇକ ପୁଏ ଖେଳ ଦେଖେଇବେ ।

ତାଙ୍କ ନିଜ ଆଡ଼ୁ, ସେ ନିମନ୍ତ୍ରଣ କରି ପକେଇଲେ କେତେଜଣ ବନ୍ଧୁଙ୍କୁ । ହାତଧରି କହିଲେ—ନିଶ୍ଚେ ଆସିବଟି ଅମୁକ ବାବୁ ?

ଆଖି ବୁଜିବାମାତ୍ରେ ଚଳଚ୍ଚିତ୍ରର ପର୍ଦ୍ଦାପରି ପାଇକଯାତ୍ରାର ରଣ-ଘୋଷ ଚହଟି ଯାଉଥିଲା ତା'ଙ୍କ ଭିତରେ । ହୃଦୟରେ ଏକ ଅଜବ୍ ଉଲ୍ଲାସ ଅନୁଭବ କରୁଥିଲେ ସେ । ଲାଗେ ଖାଲି ଦେଖୁଥିଲେ ଏଡ଼େ ଏଡ଼େ ମର୍ଦ୍ଦନିଆ ଛାତି, ଏଡ଼େ ଏଡ଼େ ଡେଣା । ଶୁଣୁଥିଲେ ଦୁଲୁ ଦୁଲୁ ହେସାରବ ।

ସଞ୍ଜବେଳକୁ ନାରଣ ଲାଗେ ପ୍ୟାରେଡ୍ ପଡ଼ିଆରେ ପହଞ୍ଚିଗଲେ । ଟିକେ ଡେରି ହୋଇଗଲା ବୋଧେ । ପଡ଼ିଆ ଘେରିପଟେ ଲୋକ

ଥାଟ ପଟାଳୀ । ମଶାଲମାନ ଜ୍ୱଳୁଚି । ବାଜା ବାଜୁଚି ଡାଉଁ ଡାଉଁ । କିଏ ଜଣେ ଗଛା ଫଟେଇ ଭଷଣ ଛାଡ଼ିଛନ୍ତି ଅନର୍ଗଳ । ଗଉତଙ୍କର ଗୋଡ଼ ଉଠିଲା ପଡ଼ିଲା । ଭେକ ହଟେଇ ମାଡ଼ିଗଲେ ସେ ଆଗକୁ । ଆଗ ଧାଡ଼ିରେ ଯାଇ ଠିଆ ହୋଇପଡ଼ିଲେ ସଗର୍ବେ ।

ପାଇକଦଳ ଘୋଡ଼ା ଚଢ଼ି କଦମ୍ ଚାଲିରେ ଯାଉଚନ୍ତି ।

ହେଲେ ଏ କ'ଣ ! ଗଉତଙ୍କର ମୁହଁ ଫିକା ପଡ଼ିଗଲା । ପାଣି ରଙ୍ଗରେ ଚିତ୍ରିତ ମୁହଁଟି ତାଙ୍କର ବର୍ଷା ଛିଟାରେ ବିଦ୍ରୂପ ହୋଇଗଲା ଯେମିତି । ସେ ମନକୁ ମନ କହି ଉଠିଲେ—ଏଗୁଡ଼ା କିଏ ? କୋଉ ପାଇକରେ ଗଣା ହେଇ ଏଠିକୁ ଆସିଚେ ଏଗୁଡ଼ା । ମୁହଁ କୋଉଠି ବୋଇଲେ ଦେହ କେଉଁଠି । ଗାଲି ହୁକା ଟାଣିଲା ପରି ଗାଲମାନ ଟୋଲା ଟୋଲା । ହନୁହାଡ଼ ବାହାରିଚି ସମସ୍ତଙ୍କର । ଚକ୍ଷୁ କୋଟରଗତ । କାନ୍ଧ ହାଡ଼ର ଖୋଲମାନଙ୍କରେ ଆଞ୍ଜୁଳାଏ ଲେଖାଁ ପାଣି ଧରିବ । ହାଡ଼ମାଳ ଦେହ । ଛାତି ବୋଲି ବିଧାତା ଯାହା ଦେଇଚି ଏ ଲୋକଙ୍କୁ ସେଗୁଡ଼ିକ ନଡ଼ା ବିଡ଼ାର ମୋଟେଇଠାରୁ ଅଧିକ ନୁହେଁ କେବେ । ଠେଙ୍ଗା ରୂପରେ ଯାହାସବୁ ହାତରେ ସେମାନେ ଧରିଛନ୍ତି, ସେଗୁଡ଼ା ଖଣ୍ଡେ ଲେଖାଁଏ କଣି ବାଉଁଶ ମାତ୍ର । ଗୋଡ଼ଗୁଡ଼ିକ ଶିଗଳ, ନଡ଼ ନଡ଼ ।

ସବୁ ସଗଗ ମଉଳି ଗଲା ଗଉତଙ୍କର । ମନେ ମନେ ସେ ଭାବିଲେ— ସତରେ କିଏ ଏମାନଙ୍କର ଦଶା **ଏମିତି କଲା** !

ମୁହଁ ଫେରେଇ ପଳେଇ ଆସିଲାବେଳକୁ ନଜର ପଡ଼ିଲା ତାଙ୍କର ପାଇକ ଦଳର ଦଳପତି ଉପରେ । ଗୋଡ଼ ଫର୍କେଇ ଚାଲୁଥିବା ଗେଗୀଣା ଘୋଡ଼ାଟି ଉପରେ ବସି ଅନ୍ତ ଦୂରତା ରକ୍ଷା ଯାଉଥିବା ସେ ପାଇକପତିର ମୁହଁଟି ହଠାତ୍ ଚିହ୍ନା ଚିହ୍ନା ଲାଗିଲା ତା'କୁ । ଆରେ ଇଏତ ଭୁବନେଶ୍ୱର ବଡ଼ ମାର୍କେଟର ଗୁଡ଼ାଖୁ ଦୋକାନୀ ବିଦିଆ । ଏଁ ଇଏବି ପାଇକ ? ମୁଣ୍ଡରେ ହାତ ଦେଲେ ନାରଣ ଗଉତେ ।

ମନସ୍ତାପରେ ପଳେଇ ଆସିଲେ ସେ ଘରକୁ । ଘରେ ଗୁଣ୍ଡାଏ ପଖାଳ ସେ ପାଟିରେ ଦଉ ଦଉ ନିଜ ସ୍ତ୍ରୀଙ୍କ ଉଦେଶ୍ୟରେ କହିଲେ—ଆହେ ! ଭେଣ୍ଡିଗଛ ପୁରୁଣା ହେଲେ ପୋକଡ଼ା କରମା କଷି ହେଲା ପରି, ଆମ ପାଇକପୁଏ ବି ଶଳେ କରମା କଷି ପାଲଟି ଗଲେଣି ।

ଶ୍ରୀମତୀ ନାରଣ ଗଉତେ କ'ଣ ବୁଝିଲେ କେଜାଣି ? ଗଉତେ କିନ୍ତୁ ଆମର ଚୁପ୍ !

(୨୮–୮–୮୫)

# ସହରରେ ବର୍ଷା

ସହରରେ ତିନୋଟି ଋତୁ । ଖରା, ବର୍ଷା, ଶୀତ ।

କେଉଁ ଜଙ୍ଗଲରେ, କେଉଁ ଦୂର ବନାନୀରେ, କେଉଁ ଗ୍ରାମୀଣ ସବୁଜ ଗହଳରେ ଆମର ପାରମ୍ପରିକ ଛଅଋତୁ ଝଗି ପଡୁଥିବେ ହୁଏତ । ମାତ୍ର ସହରରେ ତା'ର ସ୍ଥାନ କାହିଁ ? ଶରତ, ଶିଶିର, ହେମନ୍ତ, ବସନ୍ତ ପରି ଅପେକ୍ଷାକୃତ ସ୍ପର୍ଶକାତର ଜଅଁଳ ଋତୁମାନଙ୍କ ନିମିତ୍ତ ସହରର କଳାଧୂଆଁ, ସିମେଣ୍ଟ ପିଠି, ଫ୍ଲାଟ୍‌ଘର; ଉପଯୁକ୍ତ ପାତ୍ର ନୁହଁନ୍ତି ନିଶ୍ଚୟ ।

"ଶିଶିର ବିନ୍ଦୁ ଧରେନା ସହରର ଜଳାପିଠି
ଚଉଡ଼ା ରାସ୍ତାରେ
ଶରତର ତୋଫାଜହ୍ନ ମହଜନ ପଡ଼ିଯାଏ
ପ୍ରସ୍ତ ପ୍ରସ୍ତ ଧୂଆଁ ଆଉ ଗ୍ଲୁକିଗି ଆଖିରେ,
ହେମନ୍ତ ହୁଏନା ଏଠି ବାସନ୍ତୀର କୋମଳ
କାନ୍ତାର,
ସତରେ ମ...ବସନ୍ତ ନିଶ୍ଚୟ ଏଠି ଦିନେ
କିମ୍ବା ଓଲିମ୍ପିଆ ଖେଳର ଖବର ।"

କେବେ ବାପା, କେବେ ମା'ଙ୍କର ପୁରୁଣା ଧାନବିଲ ଗାଁକୁ ଗୁଡ଼ଙ୍କ ଆଣିବା ପାଇଁ ଦିନେ ଦୁଇଦିନ ନିମନ୍ତେ ଯାଇଥିବା କଲେଜପଢ଼ୁଆ ନାତି, ଋତୁ ବର୍ଣ୍ଣନା କରି କଲେଜ ପ୍ରାଚୀର ପତ୍ରରେ ଏଇଭଳି ଅବଶ୍ୟ ଲେଖେ, କିନ୍ତୁ ଅଭିମାନରେ ହେଉ ବା ଅପାତ୍ର ବୋଲି ହେଉ ଶିଶିର, ଶରତ, ହେମନ୍ତ କିମ୍ବା ବସନ୍ତ କେହି ଆବିର୍ଭୂତ ହୋଇ ପାରନ୍ତି ନାହିଁ ସହରରେ ।

ସହରରେ ଖରା ପ୍ରଚଣ୍ଡ ହୁଏ । ସରକାରୀ କୋଠାର ପୋର୍ଟିକୋଠାରୁ ଆରମ୍ଭକରି ରିକ୍ସାବାଲାର ଝୁମ୍ପୁଡ଼ିଯାଏ ଝାଞ୍ଜି ବହେ ପ୍ରବଳ । ଶୀତ ଦିନେ ଶୀତ ମଧ୍ୟ ହୁଏ ଯଥେଷ୍ଟ । ସହରର ସରୁ ରାସ୍ତା ଓ ସାଥୀହୀନ ବୃକ୍ଷଲତି କମ୍ପିଯାଆନ୍ତି ପବନର ହେମାଳ ସ୍ପର୍ଶରେ । ରାତି ଗଭୀର ହେଲେ ସହର ଯେମିତି ଶ୍ମଶାନ ପରି ଖାଁ ଖାଁ ହୋଇପଡ଼େ ।

ଖରା ଅଧିକ ହେଉ ନ ହେଉଣୁ ରାସ୍ତାରେ କାକୁଡ଼ି ବିକାଳିମାନେ ହଠାତ୍ ଅଧୀର ହୋଇପଡ଼ନ୍ତି । ଲସି ଓ ସର୍ବତର ନାଲି ନେଳି ବୋତଲ-ମାନେ ରାସ୍ତାକଡ଼ରେ ଘୋଷଣା କରିଦିଅନ୍ତି ଖରାର ତୀବ୍ରତା । ଘର, ରାସ୍ତା, ଅଫିସ୍ ସବୁଆଡ଼େ ସିଝିବାକୁ ଆରମ୍ଭ କରନ୍ତି ଧୀରେ ଧୀରେ ।

ସେଇଭଳି ଶୀତ, ସହରର ପାହାଡ଼ ଏପଟ ନ ହେଉଣୁ ମାଛ ମାଛ, ଧାଡ଼ି ଧାଡ଼ି ଉଲ୍ ବିକାଳୀଙ୍କ ଆଗମନରେ ଘୋଷିତ ହୋଇଯାଏ ଶୀତର ଖବର । ଉଲ୍‌ବିକାଳୀ ଯେମିତି ଶୀତର ଦୂଆରୀ । ସାରା ସହରରେ ଶୀତ ପାଇଁ ସମୟର କାର୍ଯ୍ୟ ନିର୍ଘଣ୍ଟ ବିଦଳିଯାଏ ଯେମିତି ! ବନ୍ଧାକୋବି, ଫୁଲକୋବି ପର୍ବତ ପାଲଟି ଯାଆନ୍ତି ସହରର ମୁଖ୍ୟ ବଜାରରେ । ରାତି ଅନ୍ଧାର ନ ହେଉଣୁ, ନିବୁଜ୍ ହୋଇଯାଏ ଗୋଟି ଗୋଟି ଘର ।

କିନ୍ତୁ ବର୍ଷା ! ବର୍ଷା ଯେମିତି ସହରର ଏକମାତ୍ର ଋତୁ । ବର୍ଷା ଆସିଲେ ଘଷିମାଜି ହୋଇ ସୁନ୍ଦର ଚିକ୍‌କଣ ଦିଶନ୍ତି ସହରର ରାସ୍ତାଘାଟ, ରାସ୍ତାକଡ଼ ଗଛବୃକ୍ଷ, ପାର୍କ ଓ ଉଦ୍ୟାନ ଆଦିର ସବୁଜିମା ସାମ୍ପୁକର ଯୁବତୀ କବରୀ ପରି ଦେଖାଯାଆନ୍ତି ଅଧିକ ନିବିଡ଼, ଅଧିକ ଗଭୀର । ଫ୍ଲାଟ୍‌ଘର କାନ୍ଥସବୁ ଓଦା ଜଡ଼ସଡ଼ ଦେହରେ, ଝାଇଁ ଝାଇଁ ଶ୍ରାବଣ ଧାରା ସ୍ରୋତ ଭିତର ଦେଇ ନିର୍ବେଦ ନୀରବ ଓଁକାର ପରି ପ୍ରତେ ହୁଅନ୍ତି ଅଧିକ ସ୍ପଷ୍ଟ, ଆପାତତଃ ନିର୍ମଳ ।

ବର୍ଷା ଯେମିତି ସହରିଆ ବାବୁ । ବର୍ଷା ନାଚେ କାଛରୁ କବାଟ, ଅଫିସ୍‌ରୁ ଘର; ଅଥଚ ସହରୀ ମଣିଷଟି ଭାଙ୍ଗିଯାଏନା ବର୍ଷାର ଦାଢ଼ରେ । ପାଦ ତା'ର ପଚ ପଚ ପଙ୍କରେ ଘା' ଫିଟେନା । ଦଳି ଫିଟେନା ଘରର ଅଗଣା । ଗାଁ ମୁଣ୍ଡ ଝୋଲମାଛ ପରି ଗଭୀର ରତିରେ ଗଉଁ ଗଉଁ କମେନା ସହର, ଭିନ୍ନ ଭିନ୍ନ ବେଙ୍ଗଙ୍କର ଦେହ ପାଇଁ ଯୁଦ୍ଧ ଡାକରରେ ।

ଖରା, ବର୍ଷା, ଶୀତ ଛଡ଼ା, ଅନ୍ୟ ଋତୁମାନେ ସହରରେ କାହାନ୍ତି ? କାହାନ୍ତି ସେସବୁ ଶରତ, ହେମନ୍ତ, ବସନ୍ତ ? ଋତୁଚକ୍ରରେ ଛଅଭାଗ ହେଲ-ବେଳେ ସହରମାନଙ୍କ କଥା, କେହି ମନେ ପକେଇ ନଥିଲେ ବୋଧେ ! ଆଜି ଭାରତରେ ଶହେକେ ପ୍ରଳିଶ୍ ଲୋକ ସହରରେ ମୁଣ୍ଡ ଗୁଞ୍ଜିଲେଣି । ସମସ୍ତଙ୍କର ଇଚ୍ଛା ସହରରେ ରହିବେ । ସହରରେ ଚାକିରି । ପିଲାମାନେ ଭଲ ସ୍କୁଲରେ

ପଢ଼ି ପାରିବେ । ସ୍ତୀ ମଧ୍ୟ କରିପାରିବେ ଚାକିରି । ସ୍ୱାମୀ, ସ୍ତୀ ଚାକିରି କରିବେ । ପିଲାମାନେ ଯିବେ ସ୍କୁଲ ।

ଫ୍ଲାଟ୍ ଘରବବୁ ତାଲା ପଡ଼ିବେ, ସକାଳ ସାଢ଼େ ଦଶର ସନ୍ଧ୍ୟା ସାଢ଼େ ପାଞ୍ଚ । ତା'ପରେ ଘରକୁ ଯେଉଁମାନେ ଫେରିବେ, ସେମାନେ ସବୁ କ୍ଳାନ୍ତ ପ୍ରଜାପତି, ଟଳମଳ ଦେହ । ଗହଳ ନିଦରେ ପ୍ରତିଟି ଘର ସାଗ ଗତି ପଥରମୁଣ୍ଡା ପାଲଟିଯିବ ।

ସହରରେ ସମୟ କାହିଁ, ଶରତ, ହେମନ୍ତ, ବସନ୍ତ ପରି କୋମଳ ଋତୁମାନଙ୍କୁ ଉପଭୋଗ କରିବାକୁ ? ଏଠି, କୈଶୋରର କୋମଳତାସବୁ ଯେମିତି ବ୍ୟସ୍ତତାର ବଡ଼ କାରଖାନାରେ ବନ୍ଦୀ । ବୁଢ଼ା, ବୁଢ଼ୀମାନେ ସହରୀ ହେଲେବି ନିର୍ମଳ ଆକାଶ, ସିରିସିରି ପବନ, ଫୁଲଫୁଟା ସମୟ ପାଇଁ ସେମାନଙ୍କର ବି ଆଉ ବେଳ ନାହିଁ ଯେମିତି । ଏ ଋତୁମାନେ ସବୁ କେଉଁ ସହରୀ ଋତୁ ଯେ ?

ସହରରେ ତିନୋଟି ଋତୁ: ଖରା, ବର୍ଷା, ଶୀତ ।

ଖରା ଖାଇଯାଏ ଦେହ:<br>ଶୀତ ସାକୁଡ଼େଇ ଦିଏ ଶରୀର<br>ହେଲେ ବର୍ଷା ?<br>ଆଃ ବର୍ଷା ! ସହର କିଶୋରୀ ।

ଉଚା ଉଚା ଘର । କାଚର କବାଟ । ଛିଟାମାରି ଝରି ଯାଉଚି କୁଡ଼ୁ କୁଡ଼ୁ ବର୍ଷାର ଆଦର । ତିନି ମହଲା ଉପର ଘରର ଦକ୍ଷିଣ ଦୁଆରୀ ଝର୍କା ଖୋଲା ପଡ଼ିଚି । ଝର୍କା ପାଖରେ ଆରାମ ଚଉକୀ । ଚଉକୀରେ ବସିଚି ସହରୀ ମଣିଷ । ଡାହାଣ ହାତରେ ଫିସ୍ ଫିସ୍ କଥାକୁହା, ଦୁକୁ ଦୁକୁ ସିଗାରେଟ୍ । ଆଜି ରବିବାର ।

ସହରରେ, ରବିବାରରେ ମାଂସ ନ ଖାଇଲେ ନ ହୁଏ । ବର୍ଷା ହେଉ କି ଶୀତ ହେଉ ।

ଫ୍ଲାଟ୍ ଘର । ରବିବାର । ପ୍ରେସର କୁକ୍‌କର୍‌ରେ ମାଂସ ତରକାରୀର ହୁସ୍ ହୁସ୍ ସ୍ୱର । ଘରେ ସ୍ତୀଙ୍କର ଅନବରତ ଘର ସଜାଡ଼ୁଥିବା ତରତର ହାତ । ବାଲ୍‌କୋନୀର ଖୋଲା ଅଂଶରେ ବାହାରକୁ ଚାହିଁ, ଅନ୍ୟମନସ୍କ ଭାବେ ନୂଆ ନୂଆ, ନର୍ସରୀ ରାଇମ୍ ଶିଖୁଥିବା ଛୋଟ ପୁଅର କଥା । ବାହାରେ ଗାଉଚି ବର୍ଷା । ଝର୍କା ପାଖରେ, ଛଅଦିନ କ୍ଳାନ୍ତିପରେ ସମୟକୁ ସେଣ୍ଟ୍ ପରି ଶୁଙ୍ଘୁଥିବା ସହରୀ ମଣିଷ । ଆଃ ବର୍ଷା !

ପାଠକେ; ସହରରେ ବର୍ଷାବେଳେ ସ୍ମୃତମାନଙ୍କ କଥା ଏ ଫ୍ଲାଟ୍ ଓ କୋଠାବାଲା ଲୋକମାନେ ଭାବିନାହାନ୍ତି ଦିନେ । ସହରୀ ବର୍ଷାରେ ଖାଲି ରନ୍ଧା ମାଂସର ହୁଇସିଲ୍ ସ୍ୱର । ୧୧ । ୯ । ୮୫

# ଆମ ପୁରୀ, ଆମ ପଣ୍ଡାଆଉ

ଚକ୍ରପାଣି ଯାଉଥିଲ ପୁରୀ, ଡୋରି ଲଗିଲ ବୋଧେ । ଅଭଡ଼ା, ସମୁଦ୍ରକୂଳ ଓ ଜଗନ୍ନାଥଙ୍କର ସ୍ମୃତି ଧୀରେ ଧୀରେ କଲି ମେଲୁଥିଲ ତା' ଭିତରେ । ପୁରୀରେ ତାଙ୍କର ହେଡ୍ ଅଫିସ୍ । ସେଇଠି ତା'ର କାମ । ଅଫିସ କାମରେ ଯିବାକୁ ପଡ଼ୁଥିଲ ତା'କୁ । ତଥାପି ସେ ଜାଣେ, ଏ ଅଫିସ୍ ଫଫିସ୍ କିଛି ନୁହଁ । ସବୁ ସେଇ ଚକାଡୋଳାଙ୍କର କାମ । ତାଙ୍କ ଡୋରି ନଲଗିଲେ, ଶ୍ରୀକ୍ଷେତ୍ର ଗମନ ସତରେ କ'ଣ ସମ୍ଭବ !

ପୁରୀ ମନ୍ଦିରରେ ଭିଡ଼ । ବଡ଼ ଦାଣ୍ଡରେ ଲୋକ ହାଉଯାଉ । ବାର-ମାସେ ତେର ଲୀଳା ଲଗାଇଛି ଚକାଡୋଳା-ପାଟି ଘା'ରେ ମୁହଁ କୁଞ୍ଚାଉଥିବା ଅନ୍ଧ ପିଲଟି ଗୀତ ଗାଉଚି ସିଂହଦ୍ୱାରରେ । ଅସନା ମସନା ହେଇଚି ସିଂହଦ୍ୱାର । ବାଲି କାଚୁ କାଚୁ । କାଦୁଅ ସଣ ସଣ । ଜଗନ୍ନାଥଙ୍କର ତ ହାତ ନାହିଁ, ତାଙ୍କ ଦୁଆର ସଫା କରିବ କିଏ ? ଅଣ୍ଟାଠାରୁ ଉପରକୁ ହାତ ଟେକି ଭକ୍ତ ଜଣେଇଲେ ଯାଏ, ପାଦତଳ କଥା କିଏ ପଗ୍ୟରୁଚି ?

ଜଣେ ପଣ୍ଡାଭଇନା ପଲାସି ଆସୁଚନ୍ତି ପାଖକୁ । ଭେଗରଗ କଥା ତୁହାଇ ତୁହାଇ ଶୁଣାଉଚନ୍ତି ସେ । ସବୁଆଡ଼ ବୁଲି ଦେଖେଇଦେବା ପାଇଁ ପ୍ରସ୍ତାବ ଦେଉଚନ୍ତି । ଖୋଲ ଦେହ । ଅଣ୍ଟାରେ ଗାମୁଛା । କପାଳରେ ଚିତା ଚଇତନ । ପାଟିରେ ପାନ । କୁସ୍ତିଘର ଡାକରା ପରି କଥାଭଷା । ନାହିଁ ନାହିଁ କରୁଚି ଚକ୍ରପାଣି । ମୁଁ ଏଇଠିକା ଲୋକ ବୋଲି କହୁଚି ସେ । ଦରକାର ନାହିଁ ମତେ କିଏ ଠାକୁର ଚିହ୍ନେଇଦେବା । ପଣ୍ଡା ଆପଣେ ଶୁଣୁ ନାହାନ୍ତି ।

ଚକ୍ରପାଣି ଯେଉଁଆଡ଼େ ଯାଉଛି, ଆଗେ ଆଗେ ବାଟ କଢ଼େଇନେବା ପରି ବାଟ ଗ୍ରୁଟକ୍ତି ସେ । ଏଇଠି ମୁଣ୍ଡିଆଟାଏ ମାର ବୋଲି ସେ ଆଦେଶ କରୁଛନ୍ତି ଚକ୍ରପାଣିକୁ—ଇଏ ସହଦେବଙ୍କର ଆସ୍ଥାନ । କୋଟି ପୁଣ୍ୟର ପୀଠ ଇଏ । ଯନ୍ତ୍ରଗ୍ଳିତ ପରି ଚକ୍ରପାଣି ମୁଣ୍ଡ ନୁଆଁଉଛି ସେଠ । ଦଶ ପଇସିଟିଏ ପକେଇ ଦେଉଛି ଠାକୁରଙ୍କ ଥାଳିରେ ।

ଲକ୍ଷ୍ମୀ ମନ୍ଦିରରେ ଲୋକ ଗହଳି । ବାହାର ମଣ୍ଡପରେ ଥାକମାଡ଼ ହୋଇ ବସିଚନ୍ତି ଭଗତଗଣ । ସେଠି ବସିଲେ ସବୁ ଶାନ୍ତି । ମହୋଦଧିରୁ ଝିଲିଝିଲି ପବନ, ଚାମର ପରି ପିଟି ହଉଚି ସେଠାରେ । ଚକ୍ରପାଣି ପାଦ ବଢ଼େଇଲା ଭିତର ଗମ୍ଭୀରକୁ । ଘିଅ ଦୀପରୁ ଧୂଆଁ ଚତରେଇ ପଡ଼ୁଛି ଖଣ୍ଡମଣ୍ଡଳରେ । ଦେହକୁ ଦେହ ମାଡ଼ ହଉଚନ୍ତି ଲୋକେ । ଠଣ୍ ଠାଣ୍ ଶୁଭୁଚି ଆଗରେ । ପଇସା ମାଡ଼ ହେଉଚି ଏତେବଡ଼ ପିତଳ ଥାଳିରେ । କେବଳ ଅଣ୍ଟାରୁ ଢଙ୍ଗମୂଳକୁ ମାତ୍ର କରିଆ ଖଣ୍ଡିକରେ ଆବଦ୍ଧ କରି ଆଉ ବାକୀ ସାଗ ଶରୀରକୁ ସ୍ୱାଧୀନ ଘୋଷଣା କରିଥିବା ଖୋଦ୍ ଲକ୍ଷ୍ମୀ ଠାକୁରଣୀଙ୍କ ପୂଜକ ଆପଣେ ନାଲି କଟକଟ ପାନୁଆଁ ପାଟିରେ ଚିତ୍କାର କରି କହୁଛନ୍ତି—ଦେ' ମା'ଙ୍କ ସୁବର୍ଣ୍ଣ ଥାଳିରେ ପକେଇ ଦେ । ଦେ' ଦେ' । ଆରେ ଦେଇଥିଲେ ପାଇ । ଜନ୍ମ ଜନ୍ମାନ୍ତରକୁ ସାଇତି ଦେ' ମାଙ୍କ ସୁବର୍ଣ୍ଣ ଥାଳକୁ ଭରି ଦେ'...ରେ...ଏ ମନୁଆଁ । ଗମ୍ଭୀର । ଭିତରେ ଦୁମ୍‌ଦୁମ୍ ଶୁଭୁଚି ସେ ସ୍ୱର । ମଝିରେ ମଝିରେ ପୂଜକଙ୍କର ହାତ, ପଚାଶ ପଇସିଟିଏ ଉଠେଇ ପୁଣି ଥରେ ପିଟି ଦେଉଚି ଥାଳି ଦେହରେ । ମନେହେବ ଯେମିତି ବାରବାର ପଇସା ପଡ଼ିବାରେ ଲଗିଚି ମାଆଙ୍କର ଥାଳିରେ ।

ଚକ୍ରପାଣି ଫଟରେ ଦେଖୁଚି ଲକ୍ଷ୍ମୀ ଠାକୁରଣୀଙ୍କର ହାତରୁ ସବୁ-ବେଳେ ଝରୁଥାଏ ଟଙ୍କା ପଇସା । ପୁରାଣରୁ ଶୁଣିଚି ସାଗ ସଂସାରର ସମ୍ପତ୍ତି ଲକ୍ଷ୍ମୀଠାକୁରଣୀଙ୍କର ଭଣ୍ଡାରରେ ଭରା । ମାତ୍ର ଏଠି ତାଙ୍କର ପ୍ରଧାନ ପୂଜକ ରଡ଼ି ଛାଡ଼ିଚନ୍ତି; ଦେ' ଦେ' ମା'ଙ୍କର ଖାଲି ଥାଳରେ ପକେଇ ଦେ । ପୁଣ୍ୟ ହେବ । ଲକ୍ଷ୍ମୀ ଠାକୁରଣୀ ସାହା ହେବେ ତତେ । ଦେ' ଦେ' ।

ନାରାୟଣଙ୍କର ମନ୍ଦିରରେ ଦେ' ଦେ' । କଳ୍ପବଟ ମୂଳେ ଦେ' ଦେ' । ଗଣେଶଙ୍କ ପାଖରେ ଦେ' ଦେ' । ବିମଳା ଆସ୍ଥାନେ ଦେ' ଦେ' । ଲକ୍ଷ୍ମୀଙ୍କ ଗମ୍ଭୀରରେ ଦେ' ଦେ' । ଚାରିଧାମରେ ଦେ' ଦେ' । ହନୁମାନଙ୍କ ପାଖରେ ଦେ' ଦେ' । ଗୌରଙ୍ଗ ପାଦରେ ଦେ'ଦେ' । ସବୁଆଡ଼େ ଖାଲି ଦେ' ଦେ'ର ରୋଳ । ମନ୍ଦିର ବେଢ଼ାସାରା ଠାକୁରମାନେ ପଣ୍ଡାମାନଙ୍କର ପାଟିମେଲେଇ କୁହାଉଚନ୍ତି ହେ' ଭଗତଗଣ । ଏ ଭେକିଲା ଠାକୁରମାନଙ୍କୁ କିଛି ଦିଅ । କିଛି ହେଲେ ପକେଇଦିଅ ଥାଳିରେ । ଏଇ ଦିଅ ଦିଅ ବୋଲି ରଡ଼ି କରୁଥିବାରୁ ତାଙ୍କ ନାଁ ଦିଅଁ ହୋଇଚି ଯେମିତି ।

ଉତ୍ତର ଦ୍ୱାରରେ ଚାରିଧାମ ପାଖରେ ଥୁଆ ହୋଇଥିଲା କାଠ-ଫ୍ରେମ୍‌ରେ ବନ୍ଧା କାଠବାଡ଼ର ଖଣ୍ଡିଏ ବାକ୍ସ । କିଛି ଅଂଶ ତାର ଟଙ୍କା, ପଇସା, ନୋଟ୍‌ରେ ଭରା । ଭକ୍ତମାନେ ଭିକ୍ଷା ଦେଇଚନ୍ତି ଠାକୁରଙ୍କୁ । କାଚ-ବାଡ଼ ଦେଇ ଜଣେଇ ଦିଆ ହୋଇଚି ଭକ୍ତଙ୍କୁ—ଏଇ ଦେଖ୍ ! ତୋ' ଆଗରୁ କେତେ ଦେଇଗଲେଣି । ଆଉ ଅପେକ୍ଷା କାହିଁକି ? ଦେ' ଦେ' କିଛି ପକେଇ ଦେ' ।

ଗତଥର ଆସିଲାବେଳେ, ଚକ୍ରପାଣି ଜଗନ୍ନାଥଙ୍କର ଉତ୍ତର ଦ୍ୱାରରେ ଦେଖିଥିଲା ଏଇମିତି ଅବିକଳ ଗୋଟେ ବଡ଼ ବାକ୍ସ । ଜଗନ୍ନାଥ ମଧ୍ୟ ମାଗୁଥିଲେ ସେତେବେଳେ । ଜଗନ୍ନାଥ ନିଜେ ଆଉ ଗୋଟେ ମାଗନ୍ତେ କ'ଣ ! ହାତ ନାହିଁ କି ଗୋଡ଼ ନାହିଁ । ପାଟି ବୋଲନ୍ତେ କେବଳ ହସ ସୋରଏ । ସେ ପାଟିରେ କି କିଛି ମାଗି ହୁଏ ? ତେଣୁ ତାଙ୍କ ପୂଜକମାନେ ତାଙ୍କ ପାଇଁ ମାଗୁଚନ୍ତି ।

ବଡ଼ ଠାକୁର । ବଡ଼ ଦେଉଳ । ବଡ଼ ନେତ । ବଡ଼ ଦାଣ୍ଡ । ସବୁ ବଡ଼ ତାଙ୍କର । ମାଗିବାରେ ମଧ୍ୟ ହଲପଟା ବଡ଼ ଯୋର୍ ତାଙ୍କ ପଣ୍ଡାଙ୍କର । ପଣ୍ଡାମାନେ ଡାକ ଛାଡ଼ିଚନ୍ତି-ଦିଅ ଦିଅ । ଠାକୁର ଠାକୁରଣୀଙ୍କ ଥାଳରେ ପକେଇ ଦିଅ ।

ଅଡ଼ି ବସିଚି,ଚକ୍ରପାଣିର ଜବରଦସ୍ତ ଗାଇଡ୍ ସାଜିଥିବା ପଣ୍ଡା-ଭଇନାଟି ଜଗନ୍ନାଥଙ୍କର ପହଡ଼ ବେଳ । ଦର୍ଶନୀଦୁଆର ଆଉଜା ହେଲଣି । ଆଉ ଟିକକୁ କେହି ଭିତରକୁ ଯାଇ ପାରିବେନି । ଦେ' ଦେ' କିଛି ଦେ' ହାତରେ । ପାଞ୍ଚଟା ଟଙ୍କା ପକେଇ ଦେ'—ଆରପଟେ ବୁଲେଇ ମୁଁ ଦର୍ଶନ କରେଇ ଆଣିବି । ପକେଟ୍ ଅଣ୍ଡାଳୁଚି ଚକ୍ରପାଣି ।

ଆନନ୍ଦ ବଜାରରେ ପଶି ଭେକମାରିବ ବୋଲି ତରତର ହଉଚି ଚକ୍ରପାଣି ଘୁବୁନ୍ଧି । ପଣ୍ଡାଭଇନା କହୁଚନ୍ତି—ଆଉ ଦୁଇଟା ଟଙ୍କା ଦିଅ । ବଡ଼ କପଟ ତମର । ଏତେ ଶ୍ରମକୁ ଏତିକି । ପକେଟ ଭିତରେ ହାତ ପୂରେଇଚି ଚକ୍ରପାଣି ।

ଫେରିଲା ବେଳକୁ ବାଇଶି ପାହାଚରେ ଗୋଳ ଲଗେଇଚନ୍ତି ଆଉ ଜଣେ ପଣ୍ଡାଭଇନା, ଦଳେ ବିହାରୀ ଯାତ୍ରୀଙ୍କ ସହ । ପାଟିତୁଣ୍ଡ ବଟସା ଚାଲିଚି ତାଙ୍କର । ସେକଡ଼େ ଜବରଦସ୍ତ ନିର୍ମାଲ୍ୟ କଣିକାଏ କେଉଁ ପଶ୍ଚିମା ଯାତ୍ରୀର ପାଟିରେ ପୂରେଇଦେଇ କିଏ ଜଣେ ପୂଜକ ହାତ ପତେଇଚନ୍ତି ଦକ୍ଷିଣା ପାଇଁ । ଦେ' ଦେ' । ଟଙ୍କେ ଦୁଇ ଟଙ୍କା ଦେ' ।

ଚକ୍ରପାଣି ଜଗନ୍ନାଥଙ୍କର ଡୋର ଛିଣ୍ଡେଇ ପଳେଇ ଆସୁଚି ପଦାକୁ । ପଦାରେ ପାଟିତୁଣ୍ଡ । ଜଣେ ଭକ୍ତକୁ ଦୁଇଜଣ ପଣ୍ଡା । ଘୁଲିଚି ଟଣା

ଓଟଗ । ଆଗରେ ରଥ ଠିଆରି ଜାଗାରେ ଗୋଟେ କାର୍ ଚାରିପଟେ ବେର୍ଢି-ଚନ୍ତି ପାଞ୍ଚଜଣ ପଣ୍ଡା । ହିନ୍ଦୀ, ବଙ୍ଗଳା ଓ ଖଣ୍ଡି ଇଂରାଜୀରେ ଏକାବେଳେକେ ଚଳେଇଚନ୍ତି କଥାଭାଷା । କାର୍ ଦୁଆର ଫିଟି ନାହିଁ ଏଯାଏଁ ।

ବସ୍‌ଷ୍ଟାଣ୍ଡରେ ପହଞ୍ଚି ଯାଇଥିଲେ ଚକ୍ରପାଣି । ବସ୍ ଛାଡ଼ିବାକୁ ଡେର୍ ଡେରି । ଗୋଟିଏ ସିଟ୍‌ରେ ବ୍ୟାଗ୍ ରଖିଦେଇ ଟହଲ ମାରୁଚି ସେ ବସ୍ କଡ଼ରେ । ପୁଣି ଜଣେ ପଣ୍ଡା ଆଗୁଳି ଠିଆ ହଉଚନ୍ତି ଆଗରେ । ପଗ୍ଚରୁଚନ୍ତି– କ'ଣ ବାବୁ, ଠାକୁର ଦର୍ଶନକୁ ଯିବେ ? ସବୁ ସୁବିଧାରେ କରେଇଦବା । ଆପଣଙ୍କର ନିବାସ କେଉଁଠି ? ଚକ୍ରପାଣି ମୁଣ୍ଡ ହଲଉଚି । ଅଥଚ ପଣ୍ଡା-ଭଇନା ଶୁଣିବାକୁ ନାରାଜ୍ । କହି ଗ୍ଲଲିଚନ୍ତି ସେ-- ସବୁ ସୁବିଧାରେ କରେଇ-ଦବା । କ'ଣ, କ'ଣ, ଭେଗ ଲଗିବ । ରହଣି କୋଉଠି ?

ଚକ୍ରପାଣି ବାଟ କଟେଇ ପଶିଯାଉଚି ବସ୍ ଭିତରେ । ବସିଗଲେଣି ଅନେକ । ବସ୍ ଛାଡ଼ିବ ବୋଧେ ଅଳ୍ପ ସମୟ ପରେ । ଗୋଟିଏ ଛୋଟପିଲା ଗୀତ ଗାଉଚି ଦାମ୍‌କାଠିଆ ଧରି । ବସ୍‌ରେ ଏତେ ଲୋକ । ତଥାପି ପାପୁଲିଟି ତା'ର ଏ ଯାଏଁ ଖାଲି । ଛେପ ଶୁଖି ଆସିଲାଣି ପାଟିରୁ । ଅଥଚ ହାତପଟେଇ ଗାଇ ଗ୍ଲଲିଚି ସିଏ ।

ତା'ର ହାତଗୋଡ଼ କିଛି ନାଇଁ
କିଛି ଦ୍ରବ୍ୟ ଦେବା ପାଇଁ
କାଳେ ଦୁଃଖୀ ଡାକ ଶୁଭିବ ବୋଲି,
ପଥର କାଛ ଗର୍ଚ୍ଚି......

ଭରୀ ସୁନ୍ଦର ସ୍ୱରରେ ଗାଉଚି ସେ ଗୀତ । ଚକ୍ରପାଣି ପକେଟ୍‌ରେ ହାତ ପୁରେଇ ପଇସା ଅଣ୍ଡାଳୁଚି । ଗୀତ ବୋଲୁଥିବା ପିଲାଟିକୁ ପଗ୍ଚରୁଚି କ'ଣ, ତୋ ନାଁ !

ପିଲାଟି ଉତ୍ତର ଦେଉଚି–'ଜଗନ୍ନାଥ'

ବସ୍‌ରେ ବସୁ ବସୁ ଖବର କାଗଜ ଖଣ୍ଡେ ପାଖ ଯାତ୍ରୀଙ୍କଠାରୁ ମାଗି ମେଲେଇ ବସୁଚି ଚକ୍ରପାଣି । ଟେଲିଗ୍ରାଫ୍ ଇଂରେଜି ଖବର କାଗଜ । ତାରିଖ ୮ । ୯ । ୮୫ । ସେଥିରେ ବାହାରିଚି ଖଣ୍ଡିଏ ବିଜ୍ଞାପନ ।

ଏକ ନୂତନ ସ୍ୱାଦର ପୁରୀକୁ ଆସନ୍ତୁ । ଜଣକୁ ମାତ୍ର ଟ ୨୭୭.୦୦ରେ ଚାରିଦିନ ଓ ତିନିରାତି ରହଣି ସୁବିଧା । ହୋଟେଲ 'ହଲିଡେ ରିସର୍ଟ' ; ଏକନମ୍ବର ସୁବିଧା । "ବିରକ୍ତିକର ପଣ୍ଡାମାନଙ୍କ ପାଖରୁ ଦୂରେଇ ରଖାଯିବ ଆପଣଙ୍କୁ ।"

ଚକ୍ରପାଣି ଆଗରେ ଭସି ଉଠୁଚି ସେଇ ପାନପାଟି ପଣ୍ଡାର ମୁହଁ; ଦେ' ଦେ', ପକେଇ ଦେ' ।
(୧୮–୯–୮୫)

## ମୂଲିଆ/ଅମଲା

ଅମଲାପଡ଼ାରେ ଘର । ସରକାରୀ କ୍ୱାର୍ଟସ୍ । ସରକାରୀ ବାବୁଭୟାଙ୍କ ପାଇଁ ସରକାର ଠିଆ କରିଦେଇଛନ୍ତି ଧାଡ଼ି ଧାଡ଼ି ଘର । ସେଥିରେ ରହିନ୍ତି ଅମଲାମାନେ । ଶାସନର ଷ୍ଟିଲ୍ ଫ୍ରେମ୍ । ଶାସନର ଷ୍ଟିଲ୍ଇତାର ନିୟନ୍ତ୍ରିତ ହୁଏ ଏଇ-ଭଳି ସାନବଡ଼ ଘରମାନଙ୍କରୁ ।

ଏକଣାମୁଣ୍ଡ କ୍ୱାର୍ଟସ୍ । ବାରଣ୍ଡା ତଳକୁ ଗୋଟିଏ ଅସ୍ଥାୟୀ ଆଜ୍‌ବେଷ୍ଟସ୍ ଘୁଳିଆ ତଳେ ବନ୍ଧା ହୋଇଛନ୍ତି, ଘରର ସ୍ୱଚ୍ଛଳପକ୍ଷ ସାବ୍ୟସ୍ତ କରୁଥିବା, ଦୁଇଟି ବଡ଼ ବଡ଼ ପଙ୍କାବାଲୀ ଦୁଧିଆଳୀ ଗାଈ । ଘର ଭିତରୁ ଶୁଭୁଚି ସଉକିନିଆ ଧଳା କୁକୁରର ପାଟି । ଘର ଆଗରେ ଦଉଡ଼ିଆ ଖଟରେ ଭେଦୁଅ ଖର ଖାଉଚି ଏତେ ଏତେ ମୋଟା ବିଛଣା ଗଦିମାନ । ପାନ ଘ୍ରେବଉ ଘ୍ରେବଉ ପାହାଚ ଉପରେ ଗୋଡ଼ ଲମ୍ବେଇ ବସିଛନ୍ତି ବାବୁଘର ମାଆ । ସମୟ ଦ୍ୱିପ୍ରହର ।

କ୍ୱାର୍ଟସ୍ ସାମନାରେ ଅନାବନା ଗଛ ସଫା କରୁଚି ଲୋକଟିଏ । ଯୁବା ବୟସ । ଖାକିକନାର ହାଫ୍‌ପ୍ୟାଣ୍ଟ । ଦେହରେ ମଇଳା ଗଞ୍ଜି । କାମ କରୁ କରୁ ଦଣ୍ଡେ ଘଡ଼ିଏ ଥକା ମାରିବା ପାଇଁ ବସି ପଡ଼ୁଚି ସିଏ ବାଡ଼ କଡ଼ରେ ଥିବା କୃଷ୍ଣଚୂଡ଼ା ଗଛମୂଳେ । ବିଡ଼ି ଖଣ୍ଡିଏ ଧରଉଚି ଓଠରେ ଏବଂ ଠିକ୍ ସେତିକିବେଳେ ପାଟି ଶୁଭୁଚି ପାହାଚ ପାଖରୁ ।

ବାବୁଘର ମା' ପାଟିକରି କହୁଚନ୍ତି—"ଆରେ ହେ ! ତୁ ମୂଲ ଲଗି-ଆସିଚୁ ନା ସଉକ କରିବାକୁ ଆସିଚୁ ! ମିନିଟ୍‌କୁ ମିନିଟ୍ ତ ଥକା ମାରୁଚୁ, ଆଉ କାମ ସାରିବୁ କେତେବେଳେ ? ଆଜି କାଲିର ଏ ମୂଲିଆଗୁଡ଼ାକ ଯାହା

ହେଲେଣି ଆଉ ଚଳିହବନି ସଂସାରରେ । କୋଉଠୁ ଏ ପୋଡ଼ାମୁହଁା ଠାପୁଆଟା ଯୁଟିଲା କେଜାଣି ?"

ଏତକ କହିଦେଇ, ପିଚ୍‌କରି ସେ ଦେଢ଼ମିଟର ଦୂରକୁ ପିଙ୍କାରିଦେଲେ ପାନପିକ । ଯେମିତ ମୂଲିଆଟା ଉଦ୍ଦେଶ୍ୟରେ ଏତକ ଅବ୍ୟାଳରେ ଖର୍ଚ୍ଚ କରିବାକୁ ପଡ଼ିଲା ତାଙ୍କୁ !

ଲୋକଟି କାମ କରୁଚି । ମଝିରେ ମଝିରେ ଏଇଭଳି ଶୁଣୁଚି, ଦୁଇ-ଗ୍ୱରି ପଦ । ସଞ୍ଜବେଳକୁ ପାଇବ ଦଶଟଙ୍କା । ଦଶଟଙ୍କାର ମୂଲ ପାଇଁ ଦଶଘଣ୍ଟା ଖଟିବ ସେ ଏଠି ପେସାରବାବୁଙ୍କ ଦୁଆରେ । ଅଷ୍ଟମ ଶ୍ରେଣୀ ଯାଏଁ ପାଠ ପଢ଼ିଚି ସେ । କୋଉଠି ଆଉକିଛି କାମଧନ୍ଦା ନାହିଁ ତା' ନଜରରେ । ପେଟ ପାଇଁ ସେ ମୂଲ ଲଗିବାକୁ ବାଧ୍ୟ । ସେ ନିଜ ସମୟକୁ ବିକେ ଅନ୍ୟପାଇଁ । ଅନ୍ୟପାଇଁ କାମକରି ସେ ତା'ର ମୂଲ୍ୟ ମାଗେ । ହାତ ପତାଏ । ତା'ର ଦଶଘଣ୍ଟାର ଝାଳନାଳ ଦେହ ଗଲା ଗଳାଳି ହେବାପରେ ତାକୁ ମିଳେ ଦଶଟଙ୍କାର ମୂଲ । ସେ ମୂଲ ଲଗୁଥିବାରୁ ମୂଲିଆ । ଅନ୍ୟ ପାଖରେ ନିଜ ସମୟକୁ ସେ ବିକୁଥିବାରୁ ସେଇଦିନକ ପାଇଁ ସେ ଅନ୍ୟର ମଜୁରିଆ । ପେସାରବାବୁ ଦୁଇଥରରେ ମାଟ୍ରିକ୍ ପାଶ୍ । ତିନିଥରରେ, ୟୁନିଭର୍‌ସିଟିରେ କିରଣୀ ଗ୍ୱକିରି କରୁଥିବା ନିଜ ମାମୁଁପୁଅଭାଇର ପ୍ରତ୍ୟକ୍ଷ ସାହାଯ୍ୟରେ ଆଇ.ଏ. । ତାଙ୍କ ମଉସା ଅବସର ନେବାବେଳକୁ ହୋଇ-ସାରିଥିଲେ ତହସିଲଦାର । ଅତଏବ କେତେ ନିକ୍ଷାରେ, କେତେ ଧାଁ ଧପଡ଼ରେ ତାଙ୍କୁ କରେଇ ଦେଇଥିଲେ ପେସାର । ଶାସନ ମାଟିରେ ତା'ଙ୍କର ଏଇଲେ ସତର ବରଷର ପେସାରିଆ ଚେର । ଜୀବନକାଳ ପାଇଁ ଏବଂ ଅବସର ପର୍ଯ୍ୟନ୍ତ ସେ ସରକାରଙ୍କର ଗ୍ୱକର । ଗ୍ୱକିରି କରିଛନ୍ତି "ସେ ସରକାରଙ୍କର ଦପ୍ତରରେ । ଗ୍ୱକିରି ଆରମ୍ଭରୁ ଅବସର ଯାଏଁ ସେ ନିଜର ସମୟକୁ ବିକି ଦେଇଚନ୍ତି ସରକାରଙ୍କ ପାଖରେ । ସେଥିପାଇଁ ତାଙ୍କୁ ମାସକୁ ମାସ ମୂଲ ଦିଅନ୍ତି ସରକାର । ସେ ସରକାରୀ ଗ୍ୱକର । ଅଥଚ ସେ 'ମୂଲିଆ' ନୁହଁନ୍ତି, 'ଅମଲା' । ତାଙ୍କର ପଦୋନ୍ନତି ଅଛି । ସମାଜରେ ଇଜ୍ଜତ ଅଛି ତାଙ୍କର । ମୂଲିଆ ବୋଲି ତାଙ୍କୁ କେହି କହେନି । ତାଙ୍କୁ ତୁ'କାର ବଚନରେ ଭର୍ତ୍ସନା କରଯାଏ ନାହିଁ । ବାବୁ ବୋଲି ସାମାଜିକ ମହଲରେ ସମ୍ବୋଧିତ ହେବେ ସିଏ । ସେ ସରକାରଙ୍କର ଲୋକ । ତା'ଙ୍କର ଭଲମନ୍ଦକୁ ସରକାର ସାହାପକ୍ଷ । ଅମଲା ସିଏ । ଅମଲାପଡ଼ାର ତା'ଙ୍କର ଘର । ତାଙ୍କ ଘରେ ପାଣିଗଳିଲେ ସେ ସରକାରଙ୍କ ପାଖରେ ଫେରାଦ ହେବାପାଇଁ ପାଇଛନ୍ତି ଅଧିକାର ।

ଅଥଚ ମୂଲିଆ ! କାହା ପାଖରେ ଗୁହାରି କରିବ ସିଏ ! ସେ ମୂଲିଆଟା । ଗେଣ୍ଡା କୋଚିଆଙ୍କ ପରି ନଗଣ୍ୟଟା । ସେଟାର ପୁଣି ଘର

ଦ୍ୱାର କ'ଣ ? ସିଏ ଖଟିବ । ଖଟିବାକୁ ତା'ର ଜନ୍ମ । କାହିଁକି ମୂଲିଆ ହୋଇ ଜନ୍ମ ହେଲାକି ? ସେ ଭଲରେ ରହିଲାକି ମନ୍ଦରେ ରହିଲା, ତା' ଖବର ସିଏ ବୁଝୁ ।—ଅମଲାପଡ଼ାରେ ସେ ମାଆମାନେ ଏକଥା ସବୁ ହାଡ଼େ ହାଡ଼େ ଜାଣନ୍ତି । ମୂଲିଆ ମୁଣ୍ଡ । ଏଗୁଡ଼ାକୁ ଥା' ବୋଲି କହିଲେ, ଆସି ମୁଣ୍ଡରେ ବସିବେ ।

କିନ୍ତୁ ଅମଲାମାନଙ୍କର ଘର ବାବୁଘର । ଅଫିସରିଆ ଘର ସେମାନଙ୍କର । ସେମାନେ କ'ଣ ମୂଲିଆ କି ?

ପେସାରବାବୁ ଦପ୍ତରରୁ ଫେରୁ ଫେରୁ ଡେରି । ସବୁଦିନେ ଘରକୁ ଫେରିବା ବେଳକୁ ତା'ଙ୍କର ପକେଟ ଓଜନ । ପେସାରିଆଣୀ ଅଣ୍ଟାକି ଦେଖନ୍ତି ଟଙ୍କା ଗୁଳିଶଟା । ଟଙ୍କା ଗଣୁ ଗଣୁ ମୁହଁ ଶୁଖେଇ କହନ୍ତି—ଆଜି କ'ଣ ଏତିକି ! ଗତକାଲି ଶହେଦେଶ ଆଣିଥିଲ, ଆଉ ଆଜି ଗୁଳିଶ କାହିଁକି ? ଆଉ କୋଉଠି କାହାକୁ ଦଉଚକି ?

ସେ ଠିକ୍ ଜାଣନ୍ତି, ତା'ଙ୍କ ଅମଲା ଗେରସ୍ତ ତାରିଖଟିଏ ବଦଳେଇଦେଲେ ମଧ୍ୟ ହାତପତାନ୍ତି,ପାଞ୍ଚ କି ପନ୍ଦର ଧରିବା ପାଇଁ ।

ପେସାରବାବୁ ଅମଲା । ତା'ଙ୍କ ମୂଲର ଖାପମାପ ନାହିଁ । ଦରମା ବୋଲି ସେ ଯାହାକୁ ଆଣନ୍ତି, ତା' ବ୍ୟତିରେକ ଫରମା ପାଇଁ ମଧ୍ୟ ତାଙ୍କର ଥାଏ ହଜାରେ ବାଟ । ସରକାରଙ୍କର କାକୁଡ଼ିବାଡ଼ିରେ ପ୍ରତିଟି ଅମଲା ଗୋଟିଏ ଗୋଟିଏ ଚଗୁଆଳି । ସଭିଙ୍କ ହାତରେ ଛାଟ । ଓଳିଆ ଜନ୍ତୁ ହୁରୁଡ଼େଇବାପାଇଁ ସମସ୍ତଙ୍କ ହାତରେ ଠକ୍‌କର ବାଜା । ଯେତେବଡ଼ ଅମଲା, ସେତେବଡ଼ ବାଜା ତା'ର । ତାକୁ ଗୁହିଁ ସେତେବଡ଼ ଛାଟ ।

ସେମାନଙ୍କ ସୁବିଧା ପାଇଁ ସରକାର କବାଟ ଖୋଲି ବସିଚନ୍ତି । ଟିକିଏ ଅଣଦେଢ଼ ହେଲେ, ହରତାଳର ଡାକରା ଦେବେ ସେମାନେ । ପକେଇବେ ଉଠେଇବେ ଶାସନ । ଗଣତନ୍ତ୍ରର ଦେଶ ଇଏ ।

ମାତ୍ର ମୂଲିଆ !

ମୂଲିଆମାନଙ୍କ ପାଇଁ ଘର କାଇଁ । କାହିଁ ଡାକ୍ତରୀ ସୁବିଧା ? ହରତାଳ କରିବେ ସେମାନେ କେମିତି ? କାହା ବିରୁଦ୍ଧରେ ? ତାଙ୍କୁ ସବୁ ଏକାଠି କରିବ କିଏ ? ଯେଉଁଦିନ ହରତାଳ ହେବ, ସେଦିନର ଚୂଲୀ ଖବର କିଏ ବୁଝିବ ସେମାନଙ୍କର ? ସେତେବେଳେ ଏ ଅମଲାମାନେ ସେମାନଙ୍କୁ ଶୁଣିବେତ ?

ମୂଲିଆ ମୂଲ ଲଗେ । ମୂଲ ଲଗେ ଅମଲା । ଅମଲା ଅନ୍ୟ ନିକଟରେ ସମୟ ବିକେ, ବିକେ ମଧ୍ୟ ମୂଲିଆ । ମାତ୍ର ମୂଲିଆ ମୂଲିଆ । ଅମଲା

ଅମଲା । ଅମଲଙ୍କର ସଂସାର ଏ ପୃଥିବୀ । ମୂଲିଆଙ୍କର ନୁହେଁ । ମୂଲିଆ-ମାନେ ଇତର, କିନ୍ତୁ ଅମଲମାନେ ଅସାମାନ୍ୟ ।

ଝଡ଼ିବର୍ଷି, ମରୁଡ଼ି, ମଡ଼କ— ଯାହାକିଛି ହେଲେ ମୂଲିଆମାନେ ଝଡ଼ିପୋକ ପରି ଝଡ଼ିବେ । ଅଥଚ ଅମଲା ମରିବେ ନାହିଁ । ତା'ଙ୍କର ଡି.ଏ. ବଢ଼ିବ, ଏ.ଡ଼ି.ଏ. ବଢ଼ିବ, ସ୍ପେଶାଲ ଆଲଓଆନସ ମିଳିବ ସେମାନଙ୍କୁ । ସେମାନଙ୍କ ହାତଦେଇ ଚୂଡ଼ା, ଗୁଡ଼ଳ, ଗହମ, କମ୍ବଳ ଆଦି ଟପ୍ ଟପ୍ ଖସି-ପଡ଼ିବେ ମୂଲିଆମାନଙ୍କର ଖାଁ ଖାଁ ଅଗଣାରେ । ଅମଲଙ୍କର ହାତ ସରକାରୀ ତେଲରେ ସଦା ଚିକ୍କଣ ।

ସରକାର ବାହାଦୂର ତାଙ୍କ ଚାକରଟି କଥା ଆଗେ ବୁଝିବେ ଅବଶ୍ୟ । କାରଣ ସେମାନେ ସରକାରୀ; ମାତ୍ର ମୂଲିଆ !

କୌଣସି ସାଧାରଣ ସାମାଜିକ ଅବସ୍ଥାରେ ଏ ବ୍ୟକ୍ତିଗୁଡ଼ିକ ମରିବେ ନାହିଁ ବୋଲି ବୋଧେ ଏମାନଙ୍କର ନାଁ ଅମଲା । ଆଉ ଏଗୁଡ଼ିକ ନିତି ମରିବେ ବୋଲି ବୋଧେ ମୂଲିଆ ।

ଏ ସରକାରୀ ଚାକରଗୁଡ଼ିକୁ କିଏ ସେ "ଅମଲା" ନାଁ ଦେଇଥିଲା କେଜାଣି ? ସତରେ କ'ଣ ଏମାନେ ଅମଲା ? ଆଉମାନେ ଖାଲି ମୂଲିଆ ?

(୨୪-୮-୮୪)

## 'ମତେ ଛୁଁ ମତେ ଛୁଁ' !

ଅଳ୍ପଦିନ ତଳେ ସେ ପାଇଥିଲେ ଖଣ୍ଡିଏ ଚିଠି । ସୁଦୂର ମଶୌରୀ ହିଲ୍ ଷ୍ଟେସନରୁ । କାହିଁ ମଦରପୁର କାହିଁ ମଶୌରୀ । ଅଥଚ ସମଗ୍ର ଦୂରତାକୁ ଗୋଟିଏ ମାନବୀୟ ହାତ ପାପୁଲିରେ ପରିଣତ କରି ଅଭାବନୀୟ ଲହରଟିଏ ସେଦିନ ଛୁଁଇଦେଲା ଦୁଇଜଣ ପ୍ରାଣୀଙ୍କୁ ।

ଦୁଇଜଣଯାକ ମଣିଷ । ଜଣେ ଓଡ଼ିଆ । ଆଉ ଜଣେ ଅଣ ଓଡ଼ିଆ । ଅଥଚ ସେଇ ଏକା ସ୍ୱର୍ଗର ଶିହରଣ ଖେଳିଗଲା ଦୁଇଜଣଙ୍କଠାରେ ।

ନିକଟରେ ତାଙ୍କର ଏକ ଗଳ୍ପ ଅନୂଦିତ ହୋଇ ପ୍ରକାଶିତ ହୋଇଥିଲା ଆଉ ଏକ ଭାରତୀୟ ଭାଷାରେ । ଗଳ୍ପଟିର ଚେତନା ଏବଂ ଆପଣାରବୋଧ ଏତେ ନିବିଡ଼ ଭାବରେ ଛୁଇଁଲା; ସେ ଚାକିରିରୁ ଅବସର ପରେ ମଶୌରୀରେ କାଳଯାପନ କରୁଥିବା ବୃଦ୍ଧାମଣିଷଟିକୁ ଯେ ସିଏ ଅଥୟ ହୋଇ ଲେଖକଙ୍କ ନିକଟକୁ ଥର ଥର ହାତରେ ଚିଠି ଖଣ୍ଡିଏ ଲେଖି ବସିଲେ । "ସତରେ, ମୁଁ ଆପଣଙ୍କର ଗଳ୍ପଟିକୁ ପଢ଼ି ଭାବିଲି ଆପଣ ଯେମିତି ମୁଁ । ମୁଁ ଲେଖି ନ ଜାଣିଲେ କ'ଣ ହେଲା; ମତେ ଜଣାପଡ଼ିଲା, ଲେଖକ ଯେମିତି ମୋରି କଥାହିଁ ମତେ ପଚାରି ଲେଖୁଛନ୍ତି "।

ଏଇଠି ବୁଝିବାକୁ ହେବ, ଏ ଗଳ୍ପଟି ଅନ୍ୟ ଭୂମିରେ, ଅନ୍ୟ ଭାଷାରେ ରଚିତ ହୋଇଥିଲେ ମଧ୍ୟ ବର୍ତ୍ତମାନ ସାର୍ବଜନୀନ । ସେ ଭାବଟି ଓଡ଼ିଆ ମାଟିର ପତ୍ର ହେଲେ ମଧ୍ୟ ବର୍ତ୍ତମାନ ତାହା ଏକ ସାର୍ବଜନୀନ ସବୁଜିମା । ଅତଏବ ସେଭଳି ସାହିତ୍ୟାନୁବୋଧ ସବୁ ମଣିଷକୁ ଛୁଇଁବ । 'ମତେ ଛୁଁ' 'ମତେ ଛୁଁ' କହି ଛୁଇଁବ ସେ ପ୍ରତ୍ୟେକ ପାଠକକୁ ।

ମଶୌରୀ ଏବଂ ଭୁବନେଶ୍ୱର ମଝିରେ ଯେଉଁ ସ୍ପର୍ଶର ଅନୁଭବଟି ସଂଘଟିତ ହେଲା, ତାହା ଏକାନ୍ତରେ ମାନବୀୟ । କାରଣ ଦୁଇଟି ମଣିଷ, ଗୋଟିଏ ମଣିଷ ପଣିଆଁର ବିଭବକୁ ଏକ ସ୍ତରରେ ଛୁଇଁବାକୁ ହେଲେ ସକ୍ଷମ । ଏଭଳି ଯୋଗାଯୋଗ ହିଁ ବୋଧେ ସାହିତ୍ୟର ସଫଳତମ ସେତୁ । ଏହା ଯେମିତି ସାହିତ୍ୟ ମାଧ୍ୟମରେ ଆଉ ଜଣକୁ ଅତି ନିକଟରେ ପାଇବା, ଅତି ନିବିଡ଼ ଭବରେ ଛୁଇଁବା ଅନ୍ୟ କାହାକୁ ।

ଓଡ଼ିଶାରେ ପାଖାପାଖି ତିନିକୋଟି ଅଧିବାସୀ । ତେରଟି ଜିଲ୍ଲାର ସୀମା ହିଡ଼ପରି ମୁଣ୍ଡଟେକି ରହିଛନ୍ତି ଏ ରାଜ୍ୟରେ ସ୍ୱାଧୀନତା ପରଠାରୁ । କୋରାପୁଟରେ ଓଡ଼ିଆ ଅଛନ୍ତି, କଣ୍ଡାବାଂଝିରେ ମଧ୍ୟ । କଟକରେ ଓଡ଼ିଆ ଅଛନ୍ତି ବି କୋଟପାଡ଼ରେ ସବୁଠି ଏକା ଭଷା (?), ଏକା ମାଟି, ଏକ-ଶାସନାଧୀନ ମଣିଷ । ଓଡ଼ିଆ ସାହିତ୍ୟ ମଧ୍ୟ ଅଳ୍ପ ବହୁତେ ଫୁଲପରି ଫୁଟୁଛି ଓଡ଼ିଆ ମାଟିରେ । ଅଥଚ କେତେ ଭଗ ଓଡ଼ିଆ ଅଧିବାସୀ ଆପଣାର ମଣୁଛନ୍ତି ଏ ସାହିତ୍ୟକୁ ? କେତେଜଣ ଉପାନ୍ତ ଅଧିବାସୀଙ୍କ ପାଖରେ ଏ ସାହିତ୍ୟ ପହଞ୍ଚି ଆପଣାର ପାଇଚୁଛି ?

ଓଡ଼ିଆ ସାହିତ୍ୟ ଓଡ଼ିଶାର ନୁହେଁ ଯେମିତି । କେଉଁ ଦୂର ପ୍ରବାସର ଅଭ୍ୟାଗତ ପରି ଏ ସାହିତ୍ୟ ସତେ ଅବା କେବଳ ପରିକ୍ରମା କରି ବୁଲୁଚି ପୁରୀ, କଟକ ଏବଂ ବାଲେଶ୍ୱର । ଏଇ ତିନୋଟି ଜିଲ୍ଲାର ଜନଜୀବନ ଓ ସାମାଜିକ ଚଳଣି ବ୍ୟତିରେକ ଅନ୍ୟ ଦଶଟିଯାକ ଜିଲ୍ଲା ଯେମିତି ପୁରାପୁରି ସାହିତ୍ୟର ପରିଧିକୁ ଛୁଇଁନାହିଁ ଏଯାଏଁ । ମୁଣ୍ଡା, ବଣ୍ଡା, ପରଜା, କୋନ୍ଧ, ସାନ୍ତାଳ, ସଉରା ଆଦି ଆଦିବାସୀଙ୍କ ସମେତ ଲକ୍ଷ ଲକ୍ଷ ତଥାକଥିତ ସାଧାରଣ ଓଡ଼ିଆ ମଧ୍ୟ ଓଡ଼ିଆ ସାହିତ୍ୟଠାରୁ ଆଜି ବହୁ ଦୂରରେ । ଖୁବ୍ କମ୍ ସାହିତ୍ୟ ସୃଷ୍ଟିରେ ସମଗ୍ର ଓଡ଼ିଶାର ସାଧାରଣ ମଣିଷଟି ପ୍ରତିବିମ୍ବିତ ଏବଂ ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଉଛି ଓଡ଼ିଶାର ଶତକଡ଼ା ନବେ ଭଗ ଲୋକ ଓଡ଼ିଆ ସାହିତ୍ୟଠାରୁ ବହୁ ଦୂରରେ ।

ମଶୌରୀର ସେ ବୁଢ଼ାଙ୍କ ପାଖରେ, ତାଙ୍କ ଭଷାରେ ଆମ ସାହିତ୍ୟ ଯାଇ ହୁଏତ ଛୁଇଁଲା, ଅଥଚ ଆମ ଭାଷାରେ ଆମ ସାହିତ୍ୟ ଆମକୁ ଛୁଇଁବା ପାଇଁ ଅକ୍ଷମ ଯେମିତି !

ଓଡ଼ିଆ ସାହିତ୍ୟରେ ଫୁଲ ଫୁଟୁଚି, ଫଳ ଫଳୁଚି । ପତ୍ର ପଲ୍ଲବିତ ହେଉଛନ୍ତି ଭିନ୍ନ ଭିନ୍ନ ଋତୁରେ । ମାତ୍ର ଏ ସବୁଜିମା ନିଶ୍ଚିତରେ ସାରା ଓଡ଼ିଶାର ନୁହେଁ । ଏ ସାହିତ୍ୟ ବୃକ୍ଷ, ମାତ୍ର ତିନୋଟି ଜିଲ୍ଲାର ହିଡ଼ ଡେଇଁ ଅନ୍ୟ ଆଡ଼କୁ ଯିବାରେ ପରାହତ । ଏ ସାହିତ୍ୟ ଅବା କାହା ବାଡ଼ିରେ ଫଳୁଥିବା ଖଟା ଖଟା ଆମ୍ବ । ସେ ଆମ୍ବକୁ ସେଇ ଘରର ଲୋକେ ଓ ତାଙ୍କ

ଜ୍ଞାତି କୁଟୁମ୍ବ ଶ୍ରଦ୍ଧାବିବର୍ଜିତ ଭାବେ ସେବନ କରନ୍ତି ଯାହା । ମାତ୍ର ସେଥିରେ ସଚରାଚର ଉର୍ଜ୍ଜିମାରୁଥିବା ଘାସଫୁଲର ନା ଥାଏ ସକାଳ ଛୁଆଁ ଭାବ, ନା ସବୁଆଡ଼େ ଖେଳି ବୁଲୁଥିବା ମଳୟର ଧାର ।

ସାହିତ୍ୟ ଛୁଏଁ । ଆମୋଦିତ କରେ । ଆନ୍ତରିକତାର କୋଳା-କୋଳିରେ ବୁଡ଼େଇ ଦିଏ ପାଠକକୁ ଏବଂ ପାଠକ ପଢ଼ିଲାବେଳେ, ସମ୍ପୃକ୍ତ ଜୀବନ ଧାରାର ନିର୍ଯ୍ୟାସ ଝରିପଡ଼େ ତା' ଲୁହ ପରି ଟପ୍ ଟପ୍ ହୋଇ । ପାଠକ ଭାବେ ସେ ସେମାନେ ଓ ସେମାନେ ଯେମିତି ସେ ।

କେହି ହୁଏତ ଭାବିପାରେ ଯେ କୌଣସି ଆଦିବାସୀଙ୍କୁ ନେଇ ସେମାନଙ୍କ ବିଷୟରେ ଗଳ୍ପଟିଏ ବା କବିତାଟିଏ ବା ଉପନ୍ୟାସଟିଏ ରଚନା କରିଦେଲେ, ସେମାନଙ୍କୁ ଛୁଇଁଲାଭଳି ଭାବଟିଏ ପ୍ରକଟିତ ହୋଇଗଲା । ସତେ ଅବା ସେଇ ଭାଷାର ସାହିତ୍ୟ, ସେଇ ଭାଷାର ଦୂକୁ ଦୂକୁ ସାମିଲ ହୋଇଗଲା ଯାଇ ଆଦିବାସୀର ଘନ ଜଙ୍ଗଲରେ ! ମାତ୍ର ଏଭଳି ଭାବନାଟିଏ କେତେ ମାତ୍ରାରେ ଭୁଲ, ତାହା ଆଦିବାସୀଟି ହିଁ କେବଳ ଜାଣେ ।

ଓଡ଼ିଶାର ଅଧିକାଂଶ ଆଦିବାସୀ ଶ୍ରେଣୀର । ତା' ଠାରୁ ଅଧିକ ଓଡ଼ିଆ ସାହିତ୍ୟସହ ଅପରିଚିତ ଲୋକ । ସେଇଥିପାଇଁ ବୋଧେ ଓଡ଼ିଆ ଭାଷା, ଓଡ଼ିଶାର ହୋଇ ମଧ୍ୟ ଓଡ଼ିଶାର ନୁହେଁ ଯେମିତି । ଆଧୁନିକ କାଳରେ, ଫକୀର ମୋହନଙ୍କଠାରୁ ଆରମ୍ଭ କରି ବର୍ତ୍ତମାନର ଯେ କୌଣସି ଲେଖକ, ସମଗ୍ର ଓଡ଼ିଶାକୁ ଛୁଇଁବାକୁ ଅକ୍ଷମ । ସାରା ଓଡ଼ିଶାର ଗଳିକନ୍ଦିରେ ଚେର-ଗଜେଇ ସମସ୍ତଙ୍କୁ ଜାବୁଡ଼ି ଧରିବାଭଳି ସାହିତ୍ୟ ବୃକ୍ଷଟିଏ ଏ ଯାବତ୍ ଏ ମାଟିରେ ସୁଦୂର ପରାହତ ।

ଓଡ଼ିଆ ସାହିତ୍ୟ, ଓଡ଼ିଆ ସାହିତ୍ୟ କହି ପାରପାଟୁକା ଭିଡ଼ି ବାହାରିଥିବା ଗଳ୍ପ, କବିତା, ଉପନ୍ୟାସର ପୁସ୍ତକମାନେ ପାଠ୍ୟକ୍ରମରୁ ଓହ୍ଲାଇ ଅଧି-କାଂଶ ଓଡ଼ିଶାର ଜିଲ୍ଲାରେ ଜନସାଧାରଣର ହୃଦୟକୁ ଯେ ଛୁଇଁଚି ଏକଥା କହିବା ଭ୍ରମାତ୍ମକ । କାରଣ ସେଭଳି ସାର୍ବଜନୀନ ଭାବଟିଏ ଏ ପର୍ଯ୍ୟନ୍ତ ଓଡ଼ିଶାରେ ସୃଷ୍ଟି ହୋଇନାହିଁ । କାହିଁକି ହୋଇନାହିଁ, ସେକଥା ଭାବିବା ଓଡ଼ିଶାର ପ୍ରତ୍ୟେକ ଶିକ୍ଷିତ ଲୋକଙ୍କର କର୍ତ୍ତବ୍ୟ ଏବଂ ପ୍ରତ୍ୟେକ ସାହିତ୍ୟିକର ଧର୍ମ ।

ଆମେ ଗୋଟିଏ ରାଜ୍ୟର ଲୋକ, ଅଥଚ ଆମ ସାହିତ୍ୟର କୌଣସି ଉଦ୍ଦିଷ୍ଟ ପରିଚୟ ନାହିଁ । ମୋ ଘର ସମ୍ବଲପୁରରେ । ମୋ ଘର କଳାହାଣ୍ଡିରେ । ମୋ ଘର ମୟୂରଭଞ୍ଜରେ । କିନ୍ତୁ ମୋ ଘରର ଭାଷା ହୁଏତ ଆଉ କେଉଁ ବେଶ ପୋଷାକର ଓଡ଼ିଆ । ମୋ କଥା କହୁଥିବା ସାହିତ୍ୟ

କାହିଁ ମୋ ପାଖରେ ? ଓଡ଼ିଆ ଅଭିଧାନରେ କାହିଁ ମୋ ଓଳି ତଳର କଥା !

ବର୍ତ୍ତମାନର ଓଡ଼ିଆ ସାହିତ୍ୟ, ସମୁଦ୍ର କୂଳର ସାହିତ୍ୟ । ସେକ୍ରେ-ଟେରିଏଟ୍ ପାଖର ସାହିତ୍ୟ । ସେଥିରେ ଘନ ଜଙ୍ଗଲଘେରା ଆଦିବାସୀ ଗହଳ ଓଡ଼ିଶା କାହିଁ ଯେ ଗର୍କିଟିଏ ବା ସେକ୍ସପିୟରଟିଏ ମତେ ଛୁଁ ମତେ ଛୁଁ କହି କାବୁଡ଼ି ଧରିବ ସାରା ଓଡ଼ିଶାକୁ ?

ସେକ୍ରେଟେରିଏଟ୍ ନା ଯାଉଚି ଜଙ୍ଗଲକୁ ଜଙ୍ଗଲ ନା ଆସିପାରୁଚି ସେକ୍ରେଟେରିଏଟ୍ ପାଖକୁ !

(୩। ୧୦। ୮୫)

# ପଞ୍ଚମୁହାଁ ମଣିଷ

ସନାତନ ବାବୁ ସତେଇଶ ଦିନ ହେଲା ଅରୁଆ ଖାଉଛନ୍ତି । ବଡ଼ି ସକାଳୁ ଉଠି, ସୂର୍ଯ୍ୟୋଦୟ ପୂର୍ବରୁ କରୁଛନ୍ତି ସ୍ନାନ । ଲୋକା ବେହେରା ଘରୁ ଅଗର୍ଭିଣୀ କଳାଛଡ଼ାର ସଦ୍ୟ ଗୋବର ମଗେଇ, ତା'କୁ ମଥାରେ ତିଳକ କରୁଛନ୍ତି ସେ । ଦାଢ଼ି କାଟୁ ନାହାନ୍ତି । ତାଙ୍କ ବଗଦରେ ସ୍ୱପ୍ନେଶ୍ୱରଙ୍କ ମନ୍ଦିରରେ ଅଗାଧୁ ଭଇନା ପ୍ରତ୍ୟହ ଶହେ ଆଠ ବେଲପତ୍ର ଚଢ଼ାଉଛନ୍ତି ଏବଂ ସ୍ୱପ୍ନେଶ୍ୱର ଶମ୍ଭୁଙ୍କୁ ଅଷ୍ଟଜଳଶାୟୀ କରି, କରଉଛନ୍ତି ସ୍ନାନ ।

ତା'ଙ୍କ ସ୍ତ୍ରୀ ଶ୍ରୀମତୀ ରସାଳମଞ୍ଜରୀ ଦେବୀ ମଧ୍ୟ ସ୍ୱାମୀଙ୍କର ମଙ୍ଗଳାର୍ଥେ ଅଣ୍ଟାରେ ଖଣ୍ଡିଏ ନାଲି ସୂତା ବାନ୍ଧି ସେଥିରେ ଦୁଇଗୋଟି ମନ୍ତ୍ର-ସିଦ୍ଧ ତମ୍ବା ମୁଦ୍ରା ଓ ଗୋଟିଏ ପୋହଳା ଧାରଣ କରିଛନ୍ତି । ସାତ ଶନି-ବାର ଉପବାସ କରିବାପାଇଁ, ସେ ପାଇଛନ୍ତି ନିର୍ଦ୍ଦେଶ ।

ସନାତନ ବାବୁ ଜଣେ ପଦସ୍ଥ ଶାସକ । ପ୍ରଶାସନିକ ବିଦ୍ୟାରେ ବଡ଼ ଖ୍ୟାତିସମ୍ପନ୍ନ ସେ । ଧନ, ସମ୍ପତ୍ତି, ମାନ, ମର୍ଯ୍ୟାଦା, କୋଉଥିରେ ଅଭାବ ନାହିଁ । ଛାତ୍ର ଜୀବନରେ ସେ ନିଜେ ଥିଲେ ଜଣେ ନିଷ୍ଠାପର ବିଜ୍ଞାନବାଦୀ । ଭୂତ, ପ୍ରେତ, ଗୁଣି, ଗାରେଡ଼ି, କେଉଁଥିରେ ବିଶ୍ୱାସ ନ ଥିଲା ତାଙ୍କର । ତେଣୁ ପାଠ ପଢ଼ିଲାବେଳେ କେତେଜଣ ସାଙ୍ଗସାଥୀଙ୍କୁ ନେଇ ସେ ଗଢ଼ିଥିଲେ ଗୋଟିଏ "ହେତୁବାଦୀ ତର୍କସଂଘ ।"

ଅଥଚ ଆଜି ତାଙ୍କ ଦୃଷ୍ଟିକୋଣ ନରମି ନରମି ଆସିଲାଣି । ଶୁଣିବାକୁ ମିଳେ, କେଉଁ ଜ୍ୟୋତିଷ ମହାରାଜ ସନାତନ ବାବୁଙ୍କର ମାନସିକ ଶାନ୍ତି ଓ

ରିଷ୍ଟ ଖଣ୍ଡନପାଇଁ, ସମ୍ପ୍ରତି ଏତାଦୃଶ ଧର୍ମ ଉପଗ୍ରହର ବିଧାନ କରିଛନ୍ତି । ସନାତନ ବାବୁ ମଧ୍ୟ ପରମ ଭକ୍ତିରେ ସେସବୁ ନିୟମ କରୁଛନ୍ତି ପାଳନ ।

ବର୍ତ୍ତମାନର ଏ ବିଜ୍ଞାନସିଦ୍ଧ ଆଧୁନିକ ଯୁଗରେ କେବଳ ସନାତନ ବାବୁଙ୍କ ଭଳି, ଜଣେ ପଦସ୍ଥ ମଣିଷ ଯେ ଏପରି ସବୁ ଉପଗ୍ରହରେ ବିଶ୍ୱାସ କରୁଛନ୍ତି ସେ କଥା ନୁହେଁ, ଏଭଳି ବିଶ୍ୱାସ ବର୍ତ୍ତମାନ ଅନେକଙ୍କ କ୍ଷେତ୍ରରେ ପ୍ରଯୋଜ୍ୟ ।

ମଣିଷ ଆଧୁନିକ ହେଉଚି । ଦିନକୁ ଦିନ ଅଧିକ ସଭ୍ୟ ହେଉଛି ବୋଲି ମଣିଷ ଡିଣ୍ଡିମ ପିଟୁଚି । ବିଜ୍ଞାନର ଅଭୂତପୂର୍ବ ଉଦ୍ଭାବନ ସହ ସେ ଅସ୍ୱୀକାର କରୁଚି ସମସ୍ତ ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ଲିଖିତ ଭାବରେ । ହାତରେ ତା'ର ପ୍ରକୃତିର ନୂଆ ନୂଆ ଗନ୍ତାଘରମାନ ଦିନକୁ ଦିନ, ଅଧିକରୁ ଅଧିକ ଉନ୍ମୋଚିତ ହେଉଛି ! ମାତ୍ର ମନ ତା'ର ସେଥିରେ ସ୍ଥିର ନୁହେଁ କେବେ । ଟିପି ଚଢ଼େଇର ହୃତ୍‌ପିଣ୍ଡପରି ଛୋଟିଆ ଥିରୁ ଥିରୁ ମନଟି ତା'ର ସମ୍ପୂର୍ଣ୍ଣରୂପେ କେବେ ଏଡ଼ାଇ ଦେଇପାରୁନି ଅଦୃଶ୍ୟକୁ । ଅବିଶ୍ୱାସ କରିପାରୁନି ସେ ଅବିଶ୍ୱାସ୍ୟ ଅଲୌକିକକୁ ।

ସେ ଭାବେ ଯେତେ ନାହିଁ କଲେ ବି, ସେଥିରେ କିଛି ଥିବ ପରା ! ଠାକୁରାଣୀଙ୍କ ପାଖରେ ଘିଅ ଦୀପ ସେଥରକ ନ ବସେଇ ଚାଲି ଆସିଲି ବୋଲି, ସେମିତି ଘଟିଲା ବୋଧେ । ନାଇଁ ନାଇଁ ସେଇ ତେଉଁରିଆଟାକୁ ହାତରେ ନ ବାନ୍ଧି ରଖି ଦେଇଥିଲି ବୋଲି ଏତେସବୁ କାଣ୍ଡ ନିମିଷକେ ଘଟିଗଲା । ଆରଥରଠାରୁ ସବୁ ଶୁକ୍ରବାରରେ ଏଣିକି ନିର୍ଜଳା ଉପବାସ କରିବି । ମୁଣ୍ଡ କରି ଶୋଇବି ପଶ୍ଚିମ ଦିଗକୁ । ଫି' ମାସରେ ପାଞ୍ଚମୂର୍ତ୍ତି ବ୍ରାହ୍ମଣ ଭୋଜନ କରେଇବି ।

ଏଇଭଳି, ମଣିଷଟି ଅନେକ ଅସିଦ୍ଧ ଉପଗ୍ରହ ପ୍ରତି ନିଜର ଆନୁଗତ୍ୟ ଦେଖାଏ । ମନେ ମନେ ସେ ସବୁକୁ ଈଶ୍ୱର ପ୍ରେରିତ ବା ଅଭିପ୍ରେତ ବୋଲି ଭାବି ସ୍ୱୀକାର କରି ନିଏ ସେ ।

ଏପରି ସ୍ୱୀକାର ପ୍ରାୟତଃ ମଣିଷ ପାଖରେ ସମ୍ଭବ । ଏବଂ ଯେତେ ଯିଏ ସାମାଜିକ ଭାବେ ଅଧିକ ଉଚ୍ଚାସୀନ, ତା'ର ସ୍ୱୀକାରୋକ୍ତି ସେତେ ଅଧିକ ଆବେଗପୂର୍ଣ୍ଣ ଓ ଆକୁଳତାରେ ଭରା । ସେଇଥିପାଇଁ ଧନୀ, ମାନୀ, କ୍ଷମତାସମ୍ପନ୍ନ ପ୍ରତିଟି ଲୋକ ସହଜରେ ଗ୍ରହଣ କରିନିଏ ଏଭଳି ଯେତେସବୁ ପାରଲୌକିକ ସମ୍ଭାବନାକୁ । କାରଣ ସେ ଜାଣେ ଧନ ସ୍ଥିର ନୁହେଁ । କ୍ଷମତା ସ୍ଥିର ନୁହେଁ କେବେ । କେତେବେଳେ ହୁଏତ ଖସିଯିବ ଧନ, ଖସିଯିବ

କ୍ଷମତା । ଅତଏବ,ଗିଷ୍ଟ ଖଣ୍ଡନ ଦରକାର । ଗୁଣିଗାରେଡ଼ି ଦରକାର । ଆବଶ୍ୟକ ଏକ ମନ୍ତ୍ରସିଦ୍ଧ ଚାବିକ୍ ।

କାଳେ କ୍ଷମତା ବା ଖ୍ୟାତି ଗ୍ଲଲିଯିବ ବୋଲି ଭିତରେ ଥର ଥର କମ୍ପୁଥିବା ମଣିଷର ମାନସିକ ଶାନ୍ତିପାଇଁ ପଦସ୍ଥ ଗ୍ଲକିରିରେ ଅଧିକରୁ ଅଧିକ ପଦୋନ୍ନତି ପାଇଁ, ଅଲୌକିକ ଭାବେ କ୍ଷମତାର ପାଚ୍ଛଗଦାରେ ବସିପଡ଼ି ତଳକୁ କାକୁସ୍ଥ ହୋଇ ଗ୍ଲହୁଁ ଗ୍ଲହୁଁ ଉପରକୁ ମୁହଁଟେକି ଅନେଇ ବସିଥିବା ନିର୍ବାଚକ ପ୍ରତିଦ୍ୱନ୍ଦ୍ୱୀର ଛିଟାପଟ ପାଇଁ, ଏଇଭଳି ସ୍ୱୀକାର ଦରକାର ଯଥେଷ୍ଟ ଅଧିକ । କାରଣ ସେମାନେ ଜାଣନ୍ତି, ସାଧାରଣ ମଣିଷ ସ୍ତରରୁ କ୍ଷମତା ବା ଧନର ଛାତକୁ ଉଠି ଆସିଥିବା ପ୍ରତିଟି ସ୍ଥାନ ହିଁ ଆକସ୍ମିକ । ଏବଂ ଯେ କୌଣସି ମୁହୂର୍ତ୍ତରେ ସେ ଆକସ୍ମିକତା, କ'ଣ କିଛି ଘଟାଇ ଦେଇପାରେ । ତେଣୁ ସାଧାରଣ ମଣିଷଠାରୁ ସେମାନେ ସେଇଭଳି ମନ୍ତ୍ର, ତନ୍ତ୍ର ବା ଜଡ଼ି,ବୁଟିର ଆକସ୍ମିକତାରେ ଅଧିକ ବିଶ୍ୱାସ କରିବା ହୁଏତ ସ୍ୱାଭାବିକ ।

ଏହା ବ୍ୟତିରେକ ସାଧାରଣ ମଣିଷଟି ଯେ ଆଧୁନିକ ଜୀବନରେ ବିଜ୍ଞାନ ସହିତ ପାଦ ମିଳାଇ ଗ୍ଲଲିବାବେଳେ, ବାରମ୍ବାର ପଛକୁ ଗ୍ଲହିଁବାର ଉପକ୍ରମ କରୁ ନାହିଁ, ସେ କଥା କିଏ କହିବ ? ଆଜିକାଲିର ସମାଜରେ ଜ୍ୟୋତିଷୀ, ମନ୍ତ୍ର, ତନ୍ତ୍ରର ଅଧିକ ଆଦର ଦେଖି ହେତୁବାଦୀଟିଏ ଆଶ୍ଚର୍ଯ୍ୟହେବା ସହଜ । ଦେଉଳ ଦୁଆରରେ, ଚଣ୍ଡୀ ମନ୍ଦିରରେ ଘିଅଦୀପର ଗଦା ଗଦା ସମ୍ଭାର ଦେଖି ହୁଏତ ସେ ସବୁକୁ ପ୍ରଶ୍ନ କରୁଥିବା ମଣିଷ କ୍ଷୁର୍ଣ୍ଣ ହୋଇ ପାରେ ମନେ ମନେ । ମାତ୍ର କିଏ ଅସ୍ୱୀକାର କରିବ ସେସବୁକୁ ।

ମଣିଷପାଇଁ ଆଜି ଘରମାନଙ୍କରେ ଭିଡ଼ । ରାସ୍ତାରେ ଭିଡ଼ । ସମୁଦ୍ର କୂଳରେ ଭିଡ଼ । ରେସନ୍ ଦୋକାନରେ ଭିଡ଼ । ହାଟ ବଜାରରେ ଭିଡ଼ । ଗ୍ଲକିରି ଧାଡ଼ିରେ ଭିଡ଼ । ଡାକ୍ତରଖାନାରେ ଭିଡ଼ । ଶାନ୍ତି କାହିଁ ତା' ପାଇଁ ! ଅତଏବ ଶାନ୍ତି ଖୋଜୁ ଖୋଜୁ ଦେଉଳ ଦୁଆରେ ମଧ୍ୟ ଭିଡ଼ ।

ମନରେ ତା'ର ଯନ୍ତ୍ରର ପ୍ରକ୍ରିୟା, ଅଥଚ ଦେହ ତା'ର ଯନ୍ତ୍ର ନୁହେଁ । ହୃଦୟରେ ତା'ର ଜୀବନ ସହିତ ସାଲିସ ପାଇଁ ଆହ୍ୱାନ ଅଥଚ ସେ ସାଲସ୍ ଠାରୁ ଢେର୍ ନିର୍ଜନ ମାନସିକ ଶାନ୍ତି ଗ୍ଲହେଁ ।

ତେଣୁ ସେ ଅଲୌକିକ, ଅସମ୍ଭବ ଉଦ୍ଦେଶ୍ୟରେ ବିକଳ ହୋଇ ଗ୍ଲହିଁବନି ତ ଗ୍ଲହିଁବ ଆଉ କାହାକୁ ? ଔଷଧ କାମ ନଦେଲେ ଇଶ୍ୱର ହିଁ ତା' ପାଖରେ ଅବଶ୍ୟାମ୍ଭାବୀ, ଯେତେ କୁସଂସ୍କାର ହେଉପଛେ । ଆଧୁନିକତା ଯେତେବେଳେ ଅକୃତକାର୍ଯ୍ୟ ହୁଏ, ମଣିଷ ସେତେବେଳେ ପ୍ରାଚୀନକୁ ଫେରେ । ପଛଆଡ଼କୁ ମୁହଁ ଫେରଏ ସେ ।—ଭବେ, ଏତେ ବାଟ ଆଗେ ଆଗେ ଚାଲି

ଆସିଲି; ଏଠିତ ଆଲୋକ ନାହିଁ ! କାଳେ ପଛ ମୁହାଁ ଫେରିଲେ ଆଲୋକ ମିଳିଯିବ ପଗ !

ସେଦିନ ରୋଗ ଶଯ୍ୟାରେ ଶୋଇଥିଲେ ଜଣେ ବୃଦ୍ଧ । ଶରୀର, ତୃଣପରି କ୍ଷୀଣ । ମୃତ୍ୟୁ କତାରି ପକେଇଲଣି ଯେମିତି ଦେହରୁ ତିନି ଚତୁର୍ଥାଂଶ । ଜ୍ୟୋତିଷ ମହାଶୟ ମୁଣ୍ଡ ପାଖରେ ବସି ତଥାପି କହୁଛନ୍ତି– ମୁଁ ଜାଣେ, ଆପଣଙ୍କୁ ଏବେ ରାହୁମଣ୍ଡଳଦେଇ ଗତି କରିବାକୁ ପଡୁଚି । ଗ୍ରହମାନେ ଅନୁକୂଳ ନୁହନ୍ତି । ମାତ୍ର ବେଶିଦିନ ନୁହେଁ । ଆଉ ଏଗାର ଦିନ-ପରେ ଆପଣ ସମ୍ପୂର୍ଣ୍ଣ ସୁସ୍ଥ ହେବେ । ଏଇ ମନ୍ତ୍ରସିଦ୍ଧ ଅଷ୍ଟଧାତୁ ମୁଦିଟିକୁ କିନ୍ତୁ ହାତରୁ ଅନ୍ତର କରିବେ ନାହିଁ କେବେ ।

ଚକ୍ ଚକ୍ ଦେଖାଯାଉଚି ବୃଦ୍ଧଙ୍କର ଚକ୍ଷୁ । ସେତିକିବେଳକୁ ସେ ପଛମୁହାଁ ହୋଇ ମୁଦିଟିକୁ ପରମ ସନ୍ତୋଷରେ ଚାହିଁ ରହିଥିଲେ, ସେଦିନ ସନ୍ଧ୍ୟାରେ ମରିବା ପର୍ଯ୍ୟନ୍ତ ।

( ୧୦ – ୧୦ – ୮୫ )

# ଓଡ଼ିଆ ବିଭାଗ

ପ୍ରାୟ ଶହେବର୍ଷ ତଳେ ଜଣେ ଦୁଇଜଣ ଅନ୍ୟଭାଷାର ପଣ୍ଡିତ, "ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୁହେଁ" ବୋଲି କହିଦେବା ପରଠାରୁ, ସେତେବେଳର ଓଡ଼ିଆମାନେ ନିଜର ଭାଷାପ୍ରତି ହଠାତ୍ ସଚେତନ ହୋଇ ପଡ଼ିଥିଲେ । ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ବୋଲି ଦାବୀ ହେଲା ପ୍ରବଳ । ସେହି ମର୍ମରେ ଗ୍ଲଲିଲା ଛୋଟ ବଡ଼ ଆନ୍ଦୋଳନମାନ । ମାତୃଭୂମି ଓ ମାତୃଭାଷା ଉପରେ ମର୍ମଭେଦୀ କବିତାମାନ ଲେଖାହୋଇ ବାତାବରଣକୁ ଅଧିକ ଭାବ-ଗମ୍ଭୀର କରି ତୋଳିଥିଲା ସେତେବେଳେ । ଶେଷକୁ ୧୯୩୬ ମସିହାରେ ଭାଷାକୁ ଭିତ୍ତିକରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ହେଲା ଗଠିତ ।

ଓଡ଼ିଶାରେ ସିନା କଲେଜ ଥିଲା, ହେଲେ ବିଶ୍ୱବିଦ୍ୟାଳୟ କାହିଁ ? ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର ଓଗେର ମାତୃଭାଷାପ୍ରାଣ ପ୍ରାତଃସ୍ମରଣୀୟ ବ୍ୟକ୍ତି କେତେଜଣ ଅଣ୍ଟାଭିଡ଼ି ଧାଇଁଲେ । ଓଡ଼ିଶାକୁ ଟେକ । ଓଡ଼ିଆକୁ ଉଠାଅ । ସାଧୁ ଉଦ୍ୟମରେ ମାତିଲେ କେହି କେହି । ଶିଳ୍ପ ଯେମିତି ସଭ୍ୟତାର ମୁହଁ, ଭାଷା ସେମିତି ସଂସ୍କୃତିର ମୁହଁ । ସଂସ୍କୃତି ସମ୍ପର୍କରେ ସଚେତନ ବ୍ୟକ୍ତିମାନେ, ତେଣୁ ନିଜ ଭାଷାର କିଛି କିଛି ଉନ୍ନତି କରିବା ପାଇଁ ଲାଗିପଡ଼ିଲେ ସେତେବେଳେ ।

ବିଶ୍ୱବିଦ୍ୟାଳୟ ସ୍ତରରେ ଓଡ଼ିଆ ବିଭାଗ କେଉଁଦିନୁ ଖୋଲାଗଲାଣି । ମସ୍କୋ ବିଶ୍ୱବିଦ୍ୟାଳୟ ଓ ଲଣ୍ଡନର ସ୍କୁଲ ଅଫ୍ ଆଫ୍ରିକାନ୍ ଆଣ୍ଡ ଓରିଯେ-ଣ୍ଟାଲ ଷ୍ଟଡ଼ିଜ୍‌ରେ ମଧ୍ୟ ଖୋଲାଗଲା ଓଡ଼ିଆ ବିଭାଗ । ଅଥଚ ଓଡ଼ିଆ ଭାଷାଟି

ଗୋଟିଏ ଭାଷା ଓ ବିଭାଗ ଦୃଷ୍ଟିରୁ ଯେଉଁ ତିମିରେ ଥିଲା ଏବେ ମଧ୍ୟ ସେଇ ତିମିରେ । ଓଡ଼ିଆ ବିଭାଗ ଖୋଲିଥିବା ବିଦେଶୀ ଏବଂ ବିଭାଜ୍ୟ ଶାସକମାନେ ଓଡ଼ିଆ ଭାଷା ପଠନକୁ ନିରର୍ଥକ ମନେ କରି ଉଠେଇଦେବା ଆରମ୍ଭ କଲେଣି । ତଥାପି ଓଡ଼ିଆମାନେ ଆଲେକ ଦେଖିବାକୁ ନାରାଜ; ହାତ ଟେକିବାକୁ ନାରାଜ, ମୁହଁ ଉଠେଇବାରେ ବିମୁଖ ।

ଓଡ଼ିଆ ଭାଷା ଓଡ଼ିଶାରେ ମଧ୍ୟ ଗରିବ ମଲିମୁଣ୍ଡିଆର ଭାଷା । ଓଡ଼ିଆ ମାଧ୍ୟମ ସ୍କୁଲଗୁଡ଼ିକ ଅଣଆଧୁନିକ ଘଟଶାଳୀ ମାତ୍ର । କୋଡ଼ିଏ ବର୍ଷରୁ ଅଧିକ କାଳ ଓଡ଼ିଶାରେ ବସବାସ କରୁଥିବା ଅଣ ଓଡ଼ିଆ ଲୋକେ ଏପର୍ଯ୍ୟନ୍ତ ଓଡ଼ିଆ କ'ଣ ବୋଲି ଜାଣନ୍ତି ନାହିଁ । ଓଡ଼ିଶାର ଉପାନ୍ତ ଅଞ୍ଚଳରେ ଆଜି ଓଡ଼ିଆଭାଷୀ ଓଡ଼ିଆମାନେ ପଡ଼ୋଶୀ-ଭାଷାର ଛାଟ ମାଡ଼ରେ ଭୟଭୀତ । ମେଧାବୀ ଓଡ଼ିଆମାନେ ମଧ୍ୟ ନିଜ ଭାଷାରେ ଲେଖିବାକୁ ଆଜି ବି ସେତେଟା ପ୍ରେରଣା ଅନୁଭବ କରୁନାହାନ୍ତି । ଅନ୍ୟ ଭାଷାରେ କହିଲେ ଓଡ଼ିଆ ନିଜ ସଂସ୍କୃତି ବା ପରମ୍ପରା କଥା ଗୁଡ଼ାଏ ଲେଖି ଥରଏ ଖଣ୍ଡେ ମାଟି ତାଡ଼ି ପକେଇଛନ୍ତି ତାହା ମଧ୍ୟ ନୁହେଁ ।

ପ୍ରତିଷ୍ଠିତ ଓଡ଼ିଆ ସାହିତ୍ୟିକଙ୍କ ଭିତରୁ ଥୋକେ ଅନ୍ୟ ସାହିତ୍ୟର ସିଧାସଳଖ ଚୋର । ଆଉ ଥୋକେ 'ରାମ' ଲେଖି 'ରାମାୟଣ' ଲେଖିଚି ବୋଲି ଯାଇ ରାଜଦାଣ୍ଡରେ ହାଟ ବସାନ୍ତି ! ଅଧିକାଂଶ ଶିକ୍ଷିତ ସ୍ବଚ୍ଛଳ ପକ୍ଷ ଓଡ଼ିଆ ନିଜର ଭାଷା ସାହିତ୍ୟକୁ; ବର୍ଷକରେ ଥରେ ଘରକୁ ଶ୍ରାଦ୍ଧ କରେଇବା ପାଇଁ ଆସିଥିବା ଦାନ୍ତନିକୁଟା ଗରିବ ବ୍ରାହ୍ମଣ ପ୍ରତି ଉତ୍କୃଷ୍ଟ ଦୟାବନ୍ତ ନମସ୍କାର ଓ ପଞ୍ଚାଶ ପଇସିଟିଏ ଭଳି ଓପ୍ରୋଧଟିଏ ଦେଖେଇ କହନ୍ତି — ଓ ! ଆମ ମାତୃଭାଷାଟି ! ଆମେ ନ ପଢ଼ିଲେ, ପ୍ରକୃତରେ ଆଉ କିଏ ପଢ଼ିବ ? ମାତ୍ର ତାଙ୍କ ଘରେ ଲୋନକରି ଆଧୁନିକ ଆସବାବ୍-ପତ୍ରର ହାଟ ବସେ, ଖାଇବା ଖର୍ଚ୍ଚ କାଟ ହୋଇ ମାଇକେଲ୍ ଜାକ୍‌ସନ୍‌ର ରେକର୍ଡ କିଣାହୁଏ, ଅଥଚ ଦଶବର୍ଷରେ ମଧ୍ୟ ଖଣ୍ଡିଏ ଓଡ଼ିଆ ବହି କିଣା ହୁଏ ନାହିଁ ।

ଅନ୍ୟ ଭାଷାର ଉତ୍କର୍ଷକୁ ଆଦର କରିବା କୌଣସି ଖରାପ କାର୍ଯ୍ୟ ନୁହେଁ, ମାତ୍ର ନିଜର ମାତୃଭାଷାକୁ ବାଡ଼ ସେକଡ଼େ ପୋପାଡ଼ି ରଖିବା କେଉଁ ସୁକାର୍ଯ୍ୟ ସତେ !

ଓଡ଼ିଶାରେ ଏବେ ପାଞ୍ଚଟି ବିଶ୍ୱବିଦ୍ୟାଳୟ । ସେଥିରୁ ତିନିଗୋଟି ବିଶ୍ୱବିଦ୍ୟାଳୟ ସିଧାସଳଖ ଓଡ଼ିଆ ଭାଷାର ବିଭାଗ ଖୋଲି ମାତୃଭାଷାର ଉନ୍ନତି ସାଧନ ନିମନ୍ତେ, ଆଗଭର ଥିବେ ବୋଲି ଆଶା । ବିଶ୍ୱବିଦ୍ୟାଳୟ, ନିଜ ଭାଷାର ଉନ୍ନତି ସାଧନ କରେ, ନିଜର ଭାଷାକୁ ଓ ସାହିତ୍ୟକୁ ଅନ୍ୟତ୍ର ବିତରିତ କରେ ଏବଂ ସର୍ବୋପରି ନିଜର ଭାଷା ଓ ସାହିତ୍ୟ

ଆଗରେ ଅନ୍ୟ ସମୃଦ୍ଧ ସାହିତ୍ୟର ମୁକାବିଲା କରଏ । ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ନିଜର ମୁହଁଟେକି ଦିଗ୍‌ବଳୟ ଆଡ଼କୁ ଦୃଷ୍ଟିପାତ ନ କଲେ, ନିଜ ଭାଷା ଓ ସାହିତ୍ୟକୁ ବାଟ ଦେଖେଇବ କେଉଁ ଆଡ଼କୁ ?

ଅଥଚ ଆମ ବିଦ୍ୟାଳୟର ଓଡ଼ିଆ ବିଭାଗ ଗୁଡ଼ିକର ସେ ଅନୁବୋଧ ମୋଟେ ନାହିଁ ଯେମିତି ! ଭାଷାକୋଷ ଗବେଷଣା ପରିଷଦଟିଏ ନାହିଁ, ଅତଏବ ନିଜର ଭାଷା ସ୍ରୋତକୁ କିଏ ଆସେ କିଏ ଯାଏ ତା'ର ବିବେଚନା ନାହିଁ ମୋଟେ । ସୁସଂହତ ଭାଷା କୋଷଟିଏ ପାଇଁ ପ୍ରଚେଷ୍ଟା ନାହିଁ କାହାର । ନିଜ ସାହିତ୍ୟର ଗତି ଓ ପ୍ରଗତି ପାଇଁ ସେମିତି ଅନ୍ତର୍ମୁଖୀ ଗବେଷଣା ପାଇଁ ନିର୍ଦ୍ଦିଷ୍ଟ ଚେଆର୍ ବା ପଦ ସୃଷ୍ଟି ପାଇଁ ଆଗ୍ରହ ନାହିଁ କାହାର—ନା ସରକାର-କାରଙ୍କର, ନା ସିଣ୍ଡିକେଟ୍‌ମାନଙ୍କର ।

ସବୁ ବିଭାଗ ତୁଳନାରେ ଓଡ଼ିଆ ବିଭାଗଟି କଣିକିଆ । ଓଡ଼ିଆ ଅଧ୍ୟାପକଗୁଡ଼ିକ କୌଣସିକଥା ଜାହିର କରନ୍ତି ନାହିଁ ବୋଧେ । ଓଡ଼ିଶାର ସବୁ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗ ଏକ ନୂଆଣିଆ ବିଭାଗ । ସବୁଠାରୁ ବଡ଼ କଥା ହେଲା, ଏ ବିଭାଗଗୁଡ଼ିକର ଦୂରକୁ ଚାହିଁବାର ଦୃଷ୍ଟିଭଙ୍ଗୀ ନାହିଁ ଯେମିତି ।

କେଉଁ ସ୍ତରରେ କାର୍ଯ୍ୟକଲେ, ଓଡ଼ିଆ ଭାଷାର ସମୃଦ୍ଧି ସାଧିତ ହେବ, ସେ କଥା ସତରେ କେତୋଟି ଓଡ଼ିଆ ଜାଣନ୍ତି ? ଆମେ ସ୍ୱପ୍ନରେ ଥିଲେ ଇଂରେଜିରେ କହି ବୁଝଉଁଟେକୁ ! ରାଗିଲେ ହିନ୍ଦୀରେ କହୁ । ମାତ୍ର କାନ୍ଦିଲାବେଳେ ଓଡ଼ିଆରେ କାନ୍ଦୁ । ଓଡ଼ିଆ ଭାଷା ଅବା ଆମର ଭୋକିଲା କାନ୍ଦୁରୀ ଭାଷା ।

ଓଡ଼ିଆ ଭାଷା ଯେ ଆଜି କାଙ୍ଗାଳ, ସେଥିପାଇଁ ପ୍ରଥମେ ଦାୟୀ ସରକାର, ଦ୍ୱିତୀୟରେ ଓଡ଼ିଆ ପ୍ରଫେସର ଓ ବିଶ୍ୱବିଦ୍ୟାଳୟମାନ ଏବଂ ତୃତୀୟରେ ଦାୟୀ— ଓଡ଼ିଶାର ସବୁଯାକ ହୀନଚେତା ଅଚ୍ଛଳ ଓଡ଼ିଆ ।

ଘୋର ଦୃଷ୍ଟିଭଙ୍ଗୀର ଅଭାବ ହିଁ କାବୁ କରି ରଖିଚି ଏ ଜାତିର ଭାଷା, ସାହିତ୍ୟ ଓ ଶିଳ୍ପକୁ ।

ନିକଟରେ ଗୋଟିଏ ବିଶ୍ୱବିଦ୍ୟାଳୟର କୁଳପତି, ତାଙ୍କ ଅଧୀନରେ ଥିବା ବିଭିନ୍ନ ବିଭାଗର ମୁଖ୍ୟମାନଙ୍କ ପାଖରୁ ସ୍ୱ ସ୍ୱ ବିଭାଗର ଉନ୍ନୟନ ପାଇଁ ସେମାନେ କ'ଣ ଓ କେତେ ଗ୍ରାଣ୍ଟ ବା ଅନୁଦାନ ଚାହାନ୍ତି ତାର ଏକ ଯୋଜନା ତାଲିକା ପଠାଠ କରିବା ପାଇଁ ବିଜ୍ଞପ୍ତି ଜାରୀ କଲେ ।

କେଉଁ ବିଭାଗ ଅଧିକ ଲବୋରେଟେରୀ ଚାହିଁଲେ ତ କେଉଁ ବିଭାଗ ଚାହିଁଲେ, ସେମିନାର ପାଇଁ ଅଧିକ ପୁସ୍ତକ । ଆଉ କେହି ଛାତ୍ରମାନଙ୍କର ବିଭିନ୍ନ କ୍ଷେତ୍ର ପରିଦର୍ଶନ ପାଇଁ ଅର୍ଥ ଚାହିଁଲା ବେଳେ ଅନ୍ୟକେହି ଦାବି

କଲେ ଆମ ବିଭାଗକୁ କନ୍‌ଫରେନ୍‌ସ୍ ରୁମ୍‌ଟିଏ କରିବାପାଇଁ ଅର୍ଥ ଅନୁଦାନ ମିଳୁ । କେହି ଭିଡ଼ିଓ ସେଟ୍, କ୍ୟାମେରା ଓ ଜିରକ୍‌ସ ମେସିନ୍ ବରାଦ କଲାବେଳେ ଅନ୍ୟ କେହି ଆଧୁନିକ ରୀତିରେ ଗବେଷଣାଗାର କରି ନୂଆ ନୂଆ ଦିଗପ୍ରତି ଦୃଷ୍ଟିପାତ କରିବାକୁ ଚାହିଁଲେ । ମାତ୍ର ଓଡ଼ିଆ ବିଭାଗ କୁଳପତିଙ୍କ ନିକଟକୁ ଯେଉଁ ଆବେଦନ-ଚିଠା ପଠାଇଥିଲେ ତାହା ବାସ୍ତବିକ୍ ପ୍ରଣିଧାନଯୋଗ୍ୟ ।

ଗୋଟିଏ ବଡ଼ ଲଫାଫାରେ ଛୋଟ କାଗଜ ଖଣ୍ଡିକରେ ଓଡ଼ିଆ ବିଭାଗର ମୁଖ୍ୟ ବିନମ୍ର ହସ୍ତାକ୍ଷରରେ ନିଜ ବିଭାଗର ଦାବୀ ସମ୍ପର୍କରେ ଯୋଜନା ଦେଇଥିଲେ–"ଆମ ଗୋପାଳ ପାଇଁ ସାଇକେଲ ଖଣ୍ଡିଏ ଅନୁମତି ହେଲେ ବାଧିତ ହେବୁଁ ।"

ପାଠକେ ଜାଣିରଖିବା ଉଚିତ୍, ଉପର ବର୍ଣ୍ଣିତ ଗୋପାଳଟି ଓଡ଼ିଆ ବିଭାଗର ପିଅନ ।

ଏଇଭଳି ଆମ ଓଡ଼ିଆ ବିଭାଗମାନଙ୍କର ଦୂରଦୃଷ୍ଟି-ଦୃଷ୍ଟିଭଙ୍ଗୀ; କିମାଧିକମ୍ ?

୪–୧୨–୮୫

## ଶିକ୍ଷିତ ଓଡ଼ିଆଙ୍କ ଠିକଣା—୧

ରସାନନ୍ଦ ବି.ଏ. ଶ୍ରେଣୀର ଛାତ୍ର । ତାଙ୍କୁ ପଚାରନ୍ତୁ, ତା' ଘର କେଉଁଠାରେ । ସେ ଉତ୍ତର ଦେବ, ଆଠ ନମ୍ବର ।

କୃପାସିନ୍ଧୁ ଚାକିରୀ କରିଛନ୍ତି ଭୁବନେଶ୍ୱରରେ । ତାଙ୍କୁ ତାଙ୍କର ଠିକଣା ମାଗନ୍ତୁ । ସେ କହିବେ—ଛଅ ନମ୍ବର ସେଇ ଘଡ଼ିଆପାଖ ପ୍ରଥମ ଟ୍ରାନ୍ସ-ଫର୍ମର ଲଗିଥିବା ଗଳିରେ, ଚତୁର୍ଥ ଘର, ସେଭେନ୍ ବାଇ ଟୁ, ଟାଇପ୍-ଫୋର୍ । ସେଇଠି ସିଏ ଗତ ପଚିଶ ବର୍ଷ ହେଲା ରହି ଆସୁଛନ୍ତି ।

କାଶୀନାଥ କବିତା ଲେଖେ । ଏମ୍. ଏ. ପାଶ୍ କଲାପରେ ଚାକିରୀ ପାଇନି । ବାପାଙ୍କ ପଇସାରେ ଏବେବି' ଛାତ୍ର ଜୀବନର କଦମ୍ବ ଫୁଟେଇ ସେ ବିଭିନ୍ନ ଆସରରେ କବିତା ପଢ଼େ । ସେଇମାତ୍ର କେବଳ ଜଣେ ବାସ୍ତବ କବି ବୋଲି କହି, ସେ ଛାତି ଫୁଲାଏ । ପଚାରନ୍ତୁ ତାକୁ— ଭଲ ! ତମ ଘର କେଉଁଠି ? ସେ କହିବ ଏକ ନମ୍ବର । ଆପଣ ପୁଣି ପଚାରିବେ, ନାଇଁମ ନିଜ ଘର, ସେ ପୁଣି କହିବ, କହିଲି ପରା ଏକ ନମ୍ବର ହାଟ ପାଖରେ; ଏଥର ଆପଣ ଅଳ୍ପ ନରମି ଯାଇ କହିବେ—ନାଇଁ, ଶୁଣିଥିଲି ଆପଣଙ୍କ ଘର ଯାଜ-ପୁର ପାଖ ବ୍ରାହ୍ମଣୀକୂଳରେ ଅବସ୍ଥିତ ଘୋରଡ଼ିଆ ଗାଁରେ ? ସେଇଠୁ କବି କାଶୀନଥ କହିବ—ଓ ସେଇଟା ! ହଁ ଆମ ଗାଁ ଯେ ମୁଁ କେବେ ସେଠିକୁ ଯାଇନି । ବାପାଙ୍କ ଭଇମାନେ, ଆଉ ଜେଜେ ସେଠି ଥାଆନ୍ତି । ସେଠୁ ଆମର କେବଳ ଘିଅ ଗୁଡ଼ଜଡକ ଆସେ ।

ଝୁନୁ ଶହୀଦନଗର ହାଇସ୍କୁଲରେ ପଢ଼ୁଛି । ତା'କୁ ପଚାରନ୍ତୁ—ତୋ' ଘର କୋଉଠି ବାପା ? ସେ କହିବ ଆମ ଘର କଟକ ଯେ, ଆମେ କିନ୍ତୁ

ଶହୀଦ୍‌ନଗରେ ରହିଛୁ । ବାପା ଭୁବନେଶ୍ୱରରେ ଚାକିରି କରିଛନ୍ତି । ଆପଣ ପଚାରିବେ କଟକରେ କେଉଠି ତମ ଘର ? ସେଇଠୁ ସେ କହିବ, ସାଲେପୁର । ଆପଣ ପୁଣି ପଚାରିବେ ସାଲେପୁରର, କେଉଁଠି ? ସେ କହିବ, ହରେକୃଷ୍ଣପୁର ? ଆପଣଙ୍କର ତା'ପରର ପ୍ରଶ୍ନ କ'ଣ ପ୍ରପର୍ ହରେକୃଷ୍ଣପୁର ?

ଏଥରକ ସବୁ ସମାଧାନ କଲାପରି ସେ କହିବ, ନାଇଁ ନାଇଁ, ସେଇ ପାଖରେ ଗୋଟେ କୋଉ ଗାଁ । ମୋର ଠିକ୍ ନାଁ ମନେ ନାହିଁ । ଆମେ କେବେ ସେଠିକୁ ଯାଉନା ।

ଆମର ପ୍ରାଚୀନତମ ଅତ୍ୟାଧୁନିକ କବି ଶ୍ରୀଯୁକ୍ତ ସଚ୍ଚି ରାଉତରାୟ ମହାଶୟଙ୍କର ଗୋଟିଏ ସୁନ୍ଦର କବିତା ଅଛି; 'ଛୋଟ ମୋର ଗାଁଟି, ଭୂଗୋଳ ପୋଥୀ ପତରେ ପଢେ ନ ଥାଉ ତା'ର ନାଁଟି ।, କବିତାଟିକୁ ପଢ଼ିଲେ କବିଙ୍କ ପ୍ରତି ଆଦରରେ ମନ ଅଣେଇ ହୋଇଯାଏ । ନିଜ ଗାଁ ମୁଣ୍ଡ ପୋଖରୀ, ଢେଙ୍କେମା'ର ପାକୁଆପାଟି, ଢିଙ୍କି ପାହାରର ଶବ୍ଦ, ସବୁ ମନେ ପଡ଼ିଯାଏ ବୋଲି ଦରଦୀ ପାଠକମାନେ କହନ୍ତି । ହେଲେ, କାଇଁ ସେ ଗାଁ ?

ରସାନନ୍ଦ, କୃପାସିନ୍ଧୁ, କାଶୀନାଥ ଓ ଛନୁ ଏମାନେ କୋଉ ଗାଁର ଲୋକ ?

ଦୁଃଖ ଲାଗୁଚି କହିବାକୁ—ସଚ୍ଚି ବାବୁ, ମିଛ କଥାଟାଏ ଲେଖି ଦେଲେ ପରା ! ଗୋଟେ କୋଉ ଅଜ୍ଞାୟୁ ଭବ-ଚିତ୍ରଟିଏ ଆମ ଆଗରେ ବର୍ଣ୍ଣନା କରିଦେଇ ଆମ ଓଡ଼ିଆଙ୍କୁ ଠକି ଦେଲେ ଅବା ! ଗାଁ କାଇଁ ? କାଇଁ ସେ ଛୋଟ ଗାଁ ?

ଭାରତ ଏକ ଗ୍ରାମବହୁଳ ଦେଶ । ନେତାମାନେ ଡେଣା ଟେକି ଟେକି, ସେମାନଙ୍କ ଡେଣା ବିନ୍ଧି ଲାଣି, ଅଥଚ ଭାଷଣ ଚାଲିଚି—ଗ୍ରାମର ଉନ୍ନତିରେ ଦେଶର ଉନ୍ନତି । କୁଟୀରଶିଳ୍ପ ଘରେ ଘରେ ଚାଲିବ । ଗ୍ରାମ୍ୟ ଶିଳ୍ପରେ ସମୃଦ୍ଧ ହେବ ଦେଶ । ସାକ୍ଷର ସଂଖ୍ୟା ବଢ଼ିବ । ଫସଲ ହସିବ । କାଇଁ ସେ ଗାଁ ? କାହାନ୍ତି ସେ ସବୁ ନଇକୂଳ, ତାଳବଣ ବାୟାବସା ? କୋଉ ଗାଁ ହଜୁଛି ଆଜି ? ତେବେ ସବୁ କଣ ଭଣ୍ଡାମୀ ? ଆମ ନେତାଏ କ'ଣ ଭଣ୍ଡ ?

ଭୁବନେଶ୍ୱର ଓଡ଼ିଶାର ରାଜଧାନୀ । ଆଧୁନିକ ଓଡ଼ିଶାର ପ୍ରାଣକେନ୍ଦ୍ର ଏ ଭୁବନେଶ୍ୱର, ଭୁବନେଶ୍ୱରର ଭାବନା ହିଁ ଓଡ଼ିଶାର ଭାବନା । ଭୁବନେଶ୍ୱର ନାଡ଼ୀର ବେଗ ହିଁ ଓଡ଼ିଶା ନାଡ଼ୀର ଗଣନା । ଅତଏବ ଆପଣ, ଓଡ଼ିଶାର ଭବିଷ୍ୟତ, ଓଡ଼ିଶାର ଶିକ୍ଷିତ ଲୋକଙ୍କ ଠିକଣା ଖୋଜୁଛନ୍ତି ତ, ଭୁବନେଶ୍ୱରକୁ ଆସନ୍ତୁ । ଭୁବନେଶ୍ୱରର ପ୍ରତିଟି ରସାନନ୍ଦ, କୃପାସିନ୍ଧୁ, କାଶୀନାଥ ଓ ଛନୁଙ୍କୁ

ସେମାନଙ୍କର ଗାଁ କେଉଁଠି ବୋଲି ପଗ୍ଭରନ୍ତୁ । ଭୁବନେଶ୍ୱର ଓଡ଼ିଶା ନହୋଇ ପାରେ, ମାତ୍ର ସାର ଓଡ଼ିଶାର ମୁଣ୍ଡ ହେଉଛି ଭୁବନେଶ୍ୱର ଏବଂ ମୁଣ୍ଡ ହିଁ ଶରୀରର ଅସଲ ପରିଚୟ ନ୍ୟାୟରେ ଓଡ଼ିଶାକୁ ତା'ର ପରିଚୟ ପଗ୍ଭରିବା ପାଇଁ ହେଲେ ଆପଣ ଏଇ ଅଳ୍ପ ବୟସ ସହର ଭିତରକୁ ଆସି ସେଥିରେ ଚଳପ୍ରଚଳ ହେଉଥିବା ମଣିଷମାନଙ୍କୁ ପଚରଉଚର କରିବା ଆବଶ୍ୟକ ।

ଭୁବନେଶ୍ୱର ଏକ ଉଡ଼ିଆସିଥିବା ଚଢ଼େଇମାନଙ୍କର ବସାପରି, ଉଠାଚୂଲିଆ ମଣିଷମାନଙ୍କର ବାସସ୍ଥାନ । କେତେବର୍ଷର ସହର ଅବା ଇଏ ? ଅଥଚ ସହର ବୋଲି ରଜଧାନୀ ବୋଲି ସାର ଓଡ଼ିଶାର ଲେକେ ଡୋର ବାନ୍ଧୁଛନ୍ତି ଭୁବନେଶ୍ୱରକୁ । ଓଡ଼ିଶାର ଅଧିକାଂଶ ଶିକ୍ଷିତ ଲେକ ଗ୍ଭହାନ୍ତି, ଭୁବନେଶ୍ୱରରେ ଘର ଖଣ୍ଡିଏ ହୁଅନ୍ତା କି ? ହୁଅନ୍ତାକି ବଦଳି ଭୁବନେଶ୍ୱରକୁ ? ଝିଅ ବାହାଘରଟା ଭୁବନେଶ୍ୱରର କେଉଁ ଯୋଗ୍ୟପାତ୍ର ସହିତ ହୋଇ ପାରନ୍ତା କି ? ଅନ୍ତତଃ ଶ୍ୱଶୁରଘର, ବସାଖଣ୍ଡେ ଥାଉ ଭୁବନେଶ୍ୱରରେ ।

ଓଡ଼ିଶାର ହଜାର ହଜାର ଗାଁ ଗଣ୍ଡାର ରସ ନିଗିଡ଼ି ପଡ଼ୁଚି ଭୁବନେଶ୍ୱରକୁ । ମେଧାବୀ ପେଶୀଗୁଡ଼ିକ ଏକାଠି ହେଉଛନ୍ତି ଏଠାରେ । ଫେରିବାକୁ ମନ ନାହିଁ କାହାର ! କିଏ ଫେରିବାକୁ ଗ୍ଭହୁଁଚି ମାଟି ମଟାଳ ମଫସଲକୁ !

ଗାଁରେ ଜୀବନ ଆଉ ନାହିଁ । ପ୍ରାଣ ଚହଲୁ ନାଇଁ ଗାଁର ବାଉଁଶ ବଣ, ତୋଟାମାଳ, ଗହିରୀବିଲ ଓ ଗାଁ ମୁଣ୍ଡ ମେଳଣ ପଡ଼ିଆ ମାନଙ୍କରେ । ସବୁ ଅସୁବିଧା, ସବୁ ଦାରିଦ୍ର୍ୟର ଭିକ୍ଷାଥାଳ ଯେମିତି ଏ ଗାଁ ଗୁଡ଼ିକ । ସହରର କଲମଧର ହାତ ଯାହାକିଛି ମୁଞ୍ଚ ଦେଉଛି, ସେହି ଦାନରେ ଯେମିତି ପ୍ରତିପାଲ୍ୟ ଆମ ମାଟିର ସବୁ ଗାଁ ଗଣ୍ଡା !

ଗାଁର ଫଳ, ଗାଁର ଫସଲ, ଗାଁର ଝାଳବୁହା ମୁହଁ, ସୁନା ଫଳୋଉଥିବା ଶିରଳ ହାତ; ଗାଁ ହିଁ ସଂଖ୍ୟାଗରିଷ୍ଠ । ଅଥଚ ସହରର ଅଭିଯାତ ତନ୍ତ୍ର ଗ୍ଭଲିଛି ସବୁଆଡ଼େ । ସହର ଶାସନ କରୁଚି ଗାଁ ଗୁଡ଼ିକୁ । ସରକାରକାର ପାଲଟି, ପ୍ରତିଟି ସହର ହାକିମାତି ଅମଲାତନ୍ତ୍ରର ତୁଳାଶେଯ ପାଲଟି ଯାଉଛି । ସହର ଯେମିତି ଅମଲାଟିଏ । ଏ ଗାଁଗଣ୍ଡା ଧୂଳିମାଟି ପାଣି କାଦୁଅର, ଗାଁଗଣ୍ଡା ଗୁଡ଼ିକ ଗୋଟି ଖଟୁଥିବା ପ୍ରଜା ।

ଧାଡ଼ି ଲଗୁଛି ସହରକୁ । ଗାଁ ଗୁଡ଼ିକ ନିସ୍ୱ ହେଉଛନ୍ତି ଆମରି ହାତରେ । ସବୁ ଶିକ୍ଷିତ ଲେକଙ୍କର ବାସ ପାଲଟିଚି ସହର । ଅଶିକ୍ଷିତ ଲେକ ନାହାନ୍ତି ବୋଲି ନୁହେଁ, ମାତ୍ର ସେମାନଙ୍କର ଜୀବନ ନାଜନର୍ଦ୍ଦମାର ଜୀବନ, ସହରୀ ଜୀବନ ନୁହେଁ ।

ଗାଁରେ ରହୁଥିବା ଲେକଟିର ପିଲାପିଲି ଉପଯୁକ୍ତ ଶିକ୍ଷାରୁ ବଞ୍ଚିତ । ଗାଁରେ ରହୁଥିବା ମଣିଷଟିଏ ଯେ କୌଣସି ରୋଗର ମୁହାଁମୁହିଁ ହେଲେ

ମୃତ୍ୟୁକୁ ସହଜରେ ଦେଖେ । କିଏ ଭରସା କରିବ ଗାଁକୁ ? କିଏ ଫେରିବାକୁ ଚାହିଁବ । ସଚ୍ଚିବାବୁଙ୍କର ସେଇ– "ଆଲୁଅ ତା'ର କି ମନୋହର, ଅନ୍ଧକାର ତା'ଠାରୁ ଭଲ" ଗାଁକୁ ?

ଓଡ଼ିଶାର କେହି ଶିକ୍ଷିତ ଲୋକ, ସମର୍ଥ ଲୋକ, ନିଜକୁ ପ୍ରଗତିଶୀଳ ବୋଲି ବିଚାର କରୁଥିବା ଲୋକ, ଭୁବନେଶ୍ୱରରେ ଖଣ୍ଡିଏ ଜାଗା ପାଇଲେ, ଘରକରି ରହିଯିବାକୁ ପଛେଇବ କି ? ସମସ୍ତେ ଭୁବନେଶ୍ୱର ଭଳି ସହରରେ ଗଣ୍ଡି ପଡ଼ିଯିବାକୁ ଚାହାନ୍ତି । ଗାଁକୁ ଯିବ କିଏ ? ଚାଷ କରିବ କିଏ ? କିଏ ଧରିବ ହଳ ? ସବୁ ଶିକ୍ଷିତ ମଣିଷ ଆଜି ସହରର କ୍ଷୀରି ହାଣ୍ଡିରେ ହାତ ପୂରେଇଛନ୍ତି ଯେମିତି ! ଗାଁକୁ ସମୃଦ୍ଧ କରିବ କିଏ ଆଉ ! କାହିଁକି ଗାଁଗଣ୍ଡା ଫାଟି ପଡ଼ୁଛନ୍ତି ନବଖଣ୍ଡ ହୋଇ ? ଗାଁରେ ବୁଲି ଝାଳନାଳ ହୋଇ ଭୋଟ ଗୋଟେଇ ସହରକୁ ଧାଇଁ ଆସିଥିବା ନେତା ଥରେ ଶାସନ ଚଉକୀ ପାଇବା-ପରେ ଗାଁକୁ ଫେରିବାର ଉଦାହରଣ ରଖୁଚି କି ? ବାସ ଉଠି ଆସୁଛି ଗାଁରୁ ଅଥଚ ଅଫିସ୍‌ଟିଏ ଖୋଲି ଯାଉଚି ନିଜ ଦଳ ପାଇଁ ।

ଭାରତ ଏକ ଗ୍ରାମବହୁଳ ଦେଶ । ମାତ୍ର ସହରର ଉନ୍ନତିରେ ଦେଶର ଉନ୍ନତି । ଏଭଳି କହୁଥିବା ଲୋକମାନେ କିଏ ?

(କ୍ରମଶଃ)

୯-୪-୮୬

# ଶିକ୍ଷିତ ଓଡ଼ିଆଙ୍କ ଠିକଣା-୨

ଗୋପାଳବାବୁ ଜଣେ ଶିକ୍ଷିତ ଓଡ଼ିଆ । ଭଲ ଓଦାଳିଆ ଚାକିରି ଖଣ୍ଡିଏ ପାଇଚନ୍ତି ସେ । ଗାଡ଼ି ମଟର ମିଳିଚି । ପିଅନ ଓ ଚପରାଶି ଖଞ୍ଜା । ଘରେ ଆସବାବ ପତ୍ର ହାଉଜାଉ । ବ୍ୟାଙ୍କରେ ପଇସା । ଲକର୍‌ରେ ଗହଣା । କଟକ ଓ ଭୁବନେଶ୍ୱରରେ ଦୁଇ ଦୁଇଟା କୋଠା । ଗାଁରେ ଆମ୍ବ ବଗିଚା ଜମିବାଡ଼ି । ସାତପୁରୁଷି ଘର ତାଙ୍କର ଗାଁରେ । ହେଲେ ଚାକିରି କଲଦିନୁ ଗାଁ ଆଡ଼ୁ ଡୋର ତାଙ୍କର କୋହଳ ହୋଇ ଯାଇଚି । ଗାଁରେ ଥିବା ବନ୍ଧୁ ବିରାଦରଙ୍କ ସହିତ ଆଉ ଆପଟଭାବ ନାହିଁ ସେମିତି । କେବେ କେମିତି ହାବୁଡ଼ି ଗଲେ, ନିଜ ରକ୍ତ ସମ୍ପର୍କର କୁଟୁମ୍ବ ଲୋକଟାକୁ ମଧ୍ୟ ସିଏ ଚିହ୍ନି ପାରୁନାହାନ୍ତି ଏବେ ।

ଗାଁ ଲୋକଗୁଡ଼ାକ ଅଶିକ୍ଷିତ, ମଳିମୁଣ୍ଡିଆ, ଚୁଗୁଲିଆ ଗୁଡ଼ାକ । ଅତଏବ ଗୋପାଳବାବୁ ଦୂରେଇ ଯାଇଛନ୍ତି ଗାଁରୁ । ଗାଁର ଓଡ଼ିଆ ଭାଷା ମଧ୍ୟ ପଶୁନାହିଁ ତାଙ୍କର ଶିକ୍ଷିତ ତୁଣ୍ଡରେ ।

ସବୁଯାକ ଶିକ୍ଷିତ ଓଡ଼ିଆଙ୍କ ପରି ସିଏ ଚିଠି ଲେଖନ୍ତି ଇଂରେଜିରେ, ଫାଇଲ କାମ କରନ୍ତି ଇଂରେଜିରେ, କେବେ କେମିତି କେଉଁଠାରେ ଦୁଇପଦ ଆନଜନମାନଙ୍କୁ କଥା କହିବା ଦରକାର ପଡ଼ିଲେ, ଗଳାଝାଡ଼ି ସେ କହିବାର ଶୁଣାଯାଏ ମତେ କ୍ଷମା କରିବେ, ମୁଁ ଓଡ଼ିଆରେ ଭଲ କହିପାରେନା; ଅତଏବ ଇଂରେଜିରେ କହିବି । ଗୋପାଳବାବୁଙ୍କୁ ଓଡ଼ିଆରେ କହିବାକୁ ସୁଯୋଗ ନାହିଁ ।

ଅଫିସରେ, ବାହାରେ, ଘରେ ସବୁଆଡ଼େ ଇଂରେଜିର କାରବାର । ଓଡ଼ିଆ ଭଷାକୁ ବ୍ୟବହାର କରିବା ପାଇଁ ସୁଯୋଗ କାହିଁ ତାଙ୍କ ପାଖରେ । ଘରେ ଥିବା ସମୟ ଯାକରୁ ଅଧା ସମୟ ତାଙ୍କର ଫୋନ୍ ନିଏ । ଫୋନ୍‌ରେ ବି ଓଡ଼ିଆ ଭଷା ଚଳେନି । 'ହେଲେ'ରୁ ଆରମ୍ଭ ହୋଇ ସରେ 'ଥାଙ୍କ୍ ୟୁ'ରେ । ଓଡ଼ିଆ ଭଷାରେ କହିଲେ, ସେପଟେ ଫୋନ ଧରିଥିବା ଲୋକଟା ବୁଝିଲେତ ! ଓଡ଼ିଆ ଭଷାରେ କଥା କହିବାକୁ ସୁଯୋଗ ନାହିଁ ଗୋପାଳବାବୁଙ୍କୁ । ନିଜ ପଦ, ନିଜ ପରିସରକୁ ଗ୍ରହିଁ ନିଜ ମାତୃଭଷାଟା ତାଙ୍କ ପାଟିରେ କଳଙ୍କି ଧରି ଗଲାଣି । ଏଣିକି କଥା କହିଲେ କେମିତି ବଙ୍କେଇ ବଙ୍କେଇ ଯାଉଚି । 'ପ' ଟା 'ଫ' ଭଳି ଶୁଭୁଚି । ଇଂରେଜି ହାତ୍‌ଡ଼ିରେ ପିଟା ଚେପାଟୋଲା ଓଡ଼ିଆ ଅକ୍ଷର ପରି । ତାଙ୍କ ପାଟିର ଓଡ଼ିଆ ଭଷା ମଧ୍ୟ କେମିତି ଅବାଗିଆ ହୋଇ ଗଲାଣି ।

ବୋଧ କରଯାଏ, ରାତି ଅଧରେ ଆପଣା ସହଧର୍ମିଣୀଙ୍କ ସହ ଏକା ମଶାରି ଭିତରେ ଶୋଇ ଦୁଇପଦ ବାର୍ତ୍ତାଳାପ କରୁଥିବା ବେଳେ ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ଶତପଥୀ ମହାଶୟ ଓଡ଼ିଆ ଭଷାରେ ଭବ ବିନିମୟ କରୁଥିବେ ପରା ! କିନ୍ତୁ ଏକଥା ପ୍ରମାଣ ଅଛି ଯେ, ବାଧ୍ୟକାରେ ପଡ଼ିଗଲେ ଗୋପାଳବାବୁ ଢେର ଗୁଡ଼ାଏ ଓଡ଼ିଆ ଭଷା କହିପକାନ୍ତି । ପେଟ ଅବିଗୁଣ ହେଲେ କି ଅନ୍ୟକିଛି ଦାଉଁଆ ରୋଗ ଧରିଲେ—ମାଆଲୋ, ବାପାଲୋ, ମରିଗଲି ଆଦି ଗୁଡ଼ାଏ ଜବରଦସ୍ତିଆ ଓଡ଼ିଆ ଶବ୍ଦ ଖସିପଡ଼େ ତାଙ୍କ ତୁଣ୍ଡରୁ ।

ଗୋପାଳବାବୁଙ୍କ ପିଲମାନେ ପଢ଼ୁଥିଲେ ଇଂରେଜି ସ୍କୁଲରେ । ଘର ପାଖରେ ଅବଶ୍ୟ ଓଡ଼ିଆ ସ୍କୁଲ ଥିଲା । ମାତ୍ର ନାକର ଓଡ଼ିଆ ସ୍କୁଲରେ ପଢ଼େଇ ଥିଲେ ପିଲମାନଙ୍କର ଭବିଷ୍ୟତ ଯେ ପାଣି ଫାଟିଯାଇ ଥାଆନ୍ତା ଏ ବିଷୟରେ ସେ ଥିଲେ ସ୍ଥିର ନିଶ୍ଚିତ । ପିଲମାନେ ଇଂରେଜି ମାଧ୍ୟମ ସ୍କୁଲରେ ପଢ଼ିବା ଫଳରେ ଓଡ଼ିଆ ଭଷା ଯେ ସେମାନଙ୍କ ପାଇଁ ସାତପର ହୋଇଗଲା ସେତିକି ନୁହେଁ, ଓଡ଼ିଆ ଜନଜୀବନ, ଓଡ଼ିଆ ସାହିତ୍ୟ ମଧ୍ୟ ସେମାନଙ୍କୁ ଅଚିହ୍ନା ଅଚିହ୍ନା ମନେ ହେଲା । କୌଶଲ୍ୟା କିଏ ବୋଲି ପଗ୍ରରିଲେ, ଉତ୍ତର ମିଳିଲା ରବଣର ସ୍ତ୍ରୀ । ମହାଭରତ କିଏ ଲେଖିଛନ୍ତିର ଉତ୍ତର ମୋକ୍ଷ ମୂଲର । ଜଗନ୍ନାଥ ଗୋଟାଏ ଆଇଡଲ ।

ଗୋପାଳବାବୁଙ୍କ ପିଲମାନେ ବୁଦ୍ଧିଆ । ଭଦ୍ର ଓ ନମ୍ର ସେମାନେ । ସେମାନେ ମଧ୍ୟ ଶିକ୍ଷିତ ଓଡ଼ିଆ । ଅଥଚ ଗୋପାଳବାବୁଙ୍କ ଅପେକ୍ଷା ଆଉ ଦୁଇ ଗ୍ରରି ହାତ ଦୂରେଇ ଗଲେଣି ସେମାନେ ଓଡ଼ିଆ ଭଷା ପାଖରୁ । ସେମାନଙ୍କ କଥାବାର୍ତ୍ତାରେ ଓଡ଼ିଆ କଥାବାର୍ତ୍ତାର ସାମାନ୍ୟ ସୂଚକ ସୁଦ୍ଧା ନାହିଁ । ବଡ଼ପୁଅ ବିବାହ କରିଚି ଏବେ ଗୋଟିଏ ଗ୍ରକିରି କରିଥିବା ଝିଅ ।

କୋଉ କଲେଜରେ ଅଧ୍ୟାପିକା । ପିଲଟିଏ ହେଲଣି । ପାଟିରେ ତା'ର 'ଡାଡି' 'ମମି' । ଖନେଇ ଖନେଇ କଥା କହୁଚି । ଓଡ଼ିଆ ଶବ୍ଦର ସାଦୃଶ୍ୟ ନାହିଁ ସେଥିରେ ।

ସମସ୍ତେ ଶିକ୍ଷିତ ଓଡ଼ିଆ । ଶିକ୍ଷିତ ଓଡ଼ିଆ ଘର ବୋଲି ଜଣାଶୁଣା ଗୋପାଳବାବୁଙ୍କର ଘର । ଅଥଚ କେତେ ମାତ୍ରାରେ ଓଡ଼ିଆ ସିଏ ! ଆମେ-ମାନେ ଯେତେ ଶିକ୍ଷିତ ଓଡ଼ିଆ କେତେ ଅନୁପାତର ଓଡ଼ିଆ ଜୀବନ ଆମ ଭିତରେ ଅଛି ? ଓଡ଼ିଆ ହେବା, ଅଚିହ୍ନା ରୋଗରେ ପଡ଼ି ରୋଗୀ ପାଲଟିବା ଯେମିତି ! ଆମେ ସବୁ କ'ଣ ସେଇ ଅଚିହ୍ନା ରୋଗର ରୋଗୀ ?

ଗୋପାଳବାବୁଙ୍କ ଘରେ ଓଡ଼ିଆ ବହି ଖଣ୍ଡିଏ ନାହିଁ । ଯୁକ୍ତି– ଓଡ଼ିଆରେ ପଢ଼ିଲା ଭଳି ବହି ନାହିଁ ! ଗୋପାଳବାବୁଙ୍କ ଘରକୁ କୌଣସି ଓଡ଼ିଆ ପତ୍ର ପତ୍ରିକା ବାଟ ପାଆନ୍ତି ନାହିଁ ଯିବାକୁ । କାରଣ ଓଡ଼ିଆ ପତ୍ର ପତ୍ରିକାରେ କ'ଣ ଶିଖିବାର ଅଛି ଯେ । କୌଣସି ଓଡ଼ିଆ ଖବରକାଗଜ ଗୋପାଳବାବୁଙ୍କ ଘରକୁ ଆସନ୍ତି ନାହିଁ । ଗୋପାଳବାବୁଙ୍କ ବାପେ, ପଣ୍ଡିତ କୁଳମଣି ଶଡପଥୀଏ ଜୀବିତ ଅବସ୍ଥାରେ ଥାଇ ପୁଅ ପାଖରେ ରହୁଥିଲା ବେଳେ ସେଇ କେତେଦିନ 'ସମାଜ' ଖବରକାଗଜ ଖଣ୍ଡିଏର ଦେଖା ଫଡ଼ଫଡ଼ କରିଥିଲା, ତାଙ୍କ ଏକଣା ଘରର ଫ୍ୟାନ୍ ତଳେ । ନଚେତ୍ ସବୁବେଳେ ତାଙ୍କ ବୈଠକ ଘରେ ଇଂରେଜି ପତ୍ର ପତ୍ରିକା-ମାନଙ୍କର ଭିଡ଼ । ଆନ୍ତର୍ଜାତିକ ସ୍ତରରେ ଯିଏ ଆଖି ଝପଟୋଉଚି ତା' ପାଇଁ ଓ ତା' ପିଲପିଲିଙ୍କ ପାଇଁ ଏଥିରୁ ଗୁଡ଼ାଏ ଗାଉଁଲୀ ଖବର, ପରସ୍ପର ପରସ୍ପର ଘଡ଼େଇ କୁତ୍ସାରଟନା ମୂଳକ ଲେଖା ଓ ସମ୍ପାଦକ ସର୍ବସ୍ୱ ଫଟୋ ସମ୍ବଳିତ ଛପେଇ କାଗଜରୁ କି ମିଳିବ ?

ସତ କଥା । ନିରଟ ସତ କଥା । ଶିକ୍ଷିତ ଓଡ଼ିଆ ହେଲେ ବୋଲି, ଓଡ଼ିଆର ଏଇ ମଇଳା କୋତର କୁଣ୍ଡରେ ସେମାନେ ଝାସ ଦିଅନ୍ତେ କେମିତି !

(କ୍ରମଶଃ)

(୬–୭–୮୬)

## ଶିକ୍ଷିତ ଓଡ଼ିଆଙ୍କ ଠିକଣା–

ସନାତନ ଗଉଡ ଯାଇଥିଲେ ଓଡ଼ିଶା ବାହାରକୁ । ଜାଗା ଜାଗା ବୁଲି ଦେଖିଲେ । ବିଭିନ୍ନ ଭାଷାଭାଷୀ ଲୋକଙ୍କର ଗତିବିଧିକୁ ଅନୁଧ୍ୟାନ କଲେ ସେ । ଓଡ଼ିଶା କଥା ଭାବିଲେ । ଚିନ୍ତା କଲେ ବସି । ସେମାନଙ୍କ ସଙ୍ଗରେ ଏମାନଙ୍କୁ ତୁଳନା କଲେ । ହାୟରେ ଓଡ଼ିଆ ବୋଲି କାନ୍ଦିଲେ ବସି । ବହେ ବାହେଇ କରୁଡ଼ି ହେଲେ । ତେଣିକି ଓଡ଼ିଆଙ୍କ ବିଷୟରେ ଗାଇଲେ ବସି–

"ଏମାନଙ୍କ ମନରେ ସ୍ୱାଭିମାନ ନାହିଁ । ଉଦ୍ଦାମ ଉଦ୍ଦୀପନା ନାହିଁ । ଅଛି କେବଳ ସାଧାରଣ ଫିଟିର ଖ୍ୟାତି । ବଞ୍ଚିବାର ବିକଳ ପ୍ରତିଶ୍ରୁତି । ନର୍ଦ୍ଦମା କଡ଼ରେ ବିଲ ମଧ୍ୟରେ ଜୀବନ କାଟୁଥିବା ଚୁଚୁନ୍ଦ୍ରାପରି ଏମାନଙ୍କର ପ୍ରତିବାଦ ନାହିଁ । ପ୍ରବହମାନ ମେଣ୍ଟ ନାହିଁ । ମାଡ଼ିଯିବାର ମୁଗ୍ଧ ଆବେଶ ନାହିଁ । ଓଡ଼ିଆ ଭାଷା କହି ଓଡ଼ିଆ ମାଟିରେ ପାଦ ଚିପୁଥିବା ଏ ମଣିଷ ଗୁଡ଼ିକ ଯେପରି ନିଶ୍ଚେତନ ପ୍ରକ୍ରିୟାରେ ଅବରୁଦ୍ଧ ! ଉଠ କଙ୍କାଳ । ଉଠ କଙ୍କାଳ କହି ଏମାନଙ୍କୁ ଯେତେ ଉଦ୍‌ବୁଦ୍ଧ କଲେ ମଧ୍ୟ ଉଠିବା ପାଇଁ ଏ ଲୋକଙ୍କର ଯୁ' ନାହିଁ କେମିତି..."

"ଏ ଜାତି ନିଜ ଦେହରେ ଘା'ଟିଏ ଅଛି କହି ଆଙ୍ଗୁଠି ଦେଖେଇ ଉପହାସ କରେ । ଅନ୍ୟକୁ କହେ, ତୁ ହସ ଏ ଘା' ଦେଖି । ମାତ୍ର କିଭଳି ଉପାୟରେ ଏ ଘା'ଟି ଭଲହେବ ସେ ଚିନ୍ତା ଏ ମାଟିର ରକ୍ତରେ ନାହିଁ । ନିଜକୁ ପରସ୍ପର ପାଦ ଭିଡ଼ୁଥିବା କଙ୍କଡ଼ା ବୋଲି ଆଖ୍ୟାନ କରି ଗପଟିଏ ଅନ୍ୟ ଆଗରେ କହି ଏ ଗୁଣ ମଣିଷଗୁଡ଼ିକ ନିଜ ମୁହଁରେ ନିଜେ ଛେପ ପକାନ୍ତି ଏବଂ ହସନ୍ତି ମଧ୍ୟ ।"

ଭାରତର କୌଣସି ସ୍ଥାନରେ ଏବଂ ଭାରତ ବାହାରେ ଓଡ଼ିଶାର ଅବସ୍ଥିତି ସମ୍ପର୍କରେ ସଚେତନ ଲୋକଙ୍କର ସଂଖ୍ୟା ଆଶ୍ଚର୍ଯ୍ୟଜନକ ଭାବେ ନଗଣ୍ୟ । ବିବିଧଭାରତୀ କାର୍ଯ୍ୟକ୍ରମରେ ବେଳେ ବେଳେ ଭୁବନେଶ୍ୱର ଓଡ଼ିଶାରୁ ବା ଓଡ଼ିଶାରୁ ରଉରକେଲା ଅମୁକ ଅମୁକ ଅନୁରୋଧ କରିଛନ୍ତି ବୋଲି ଶୁଣିବାକୁ ମିଳେ । ମାତ୍ର ଗଜାନନ୍ଦ ଖାଁଙ୍କ କଟିହାର ଭଳି ଛୋଟ ଛୋଟ ଜାଗାମାନଙ୍କରୁ କେହି ଅନୁରୋଧ କରିଥିଲେ ସମ୍ପୃକ୍ତ ରାଜ୍ୟମାନଙ୍କର ନାମ କହିବା ଅନାବଶ୍ୟକ । ଏହାର କାରଣ ଓଡ଼ିଶା ବା ଏହାର କୌଣସି ସହର ବାହାରେ ମୋଟେ ଜଣାଶୁଣା ନୁହେଁ; ଏଥିପାଇଁ ସର୍ବାଗ୍ରେ ଦାୟୀ ଆମେ ଓଡ଼ିଆମାନେ । ସାଂପ୍ରତିକ କାଳରେ କୌଣସି କାର୍ଯ୍ୟ ବା ଚେତନା ମାଧ୍ୟମରେ ଉତ୍କର୍ଷ ଦେଖାଇଥିବା ଓଡ଼ିଆ ଜଣେହେଲେ ସୁଦ୍ଧା କେହି ନାହିଁ । ନିଜ ଭିତରେ ଉଚ୍ଚ ମାନର ଅଭାବବୋଧ ଯୋଗୁଁ ଆମର ସ୍ୱାଭିମାନ ଆହତ ହୁଏ ନାହିଁ । ଓଡ଼ିଆ ଭାବେ ଏଇ ସାଧାରଣ ବଞ୍ଚି ରହିବା ସ୍ଥିତିଟି ହିଁ ବୋଧେ ତାର ଅବଶ୍ୟାମ୍ଭାବୀ ପରିଚୟ, ସେଇ କାରଣରୁ ଓଡ଼ିଆ ଭାଇ ଦୁର୍ଗମ ଲଂଘିବା ପାଇଁ କୌଣସି ଇଚ୍ଛା କରେ ନାହିଁ କି ମେଘାସନ ଉପରେ ଠିଆହୋଇ ସ୍ୱପ୍ନ ପ୍ରାଚୁର୍ଯ୍ୟ ପ୍ରତି ଉତ୍କଣ୍ଠିତ ହୁଏ ନାହିଁ ତ କେବେ ।

ନିକଟ ବିଗତ କାଳରେ ଅବିଲୁପ୍ତ ହୋଇଥିବା ମଧୁସୂଦନ ଦାସଙ୍କ ଛଡ଼ା ବୋଧହୁଏ ଅନ୍ୟ କେହି ଓଡ଼ିଆ ଏ ପର୍ଯ୍ୟନ୍ତ ଜନ୍ମ ହୋଇ ନାହିଁ ଯେକି ନିଜର ସ୍ୱାଭିମାନ ସମ୍ପର୍କରେ ଚିନ୍ତା କରିଚି । ନେତୃତ୍ୱଠାରୁ ଆରମ୍ଭ କରି ଖେଳକୁଦର ସାଧାରଣ ଜୀବନ ଦ୍ୟୋତନା ପର୍ଯ୍ୟନ୍ତ ସବୁ ସ୍ତରରେ ଓଡ଼ିଆମାନଙ୍କର ସୁପ୍ତାବସ୍ଥା । କେବେ ଏ ସୁପ୍ତାବସ୍ଥାର ଅବସାନ ହେବ କଳ୍ପନା କରିବା କଷ୍ଟକର ।

ଆପଣା ଘରକୁ ନେଇ ନିଜ ମନରେ ସ୍ୱାଭିମାନ ନଥିଲେ । ତା'ର ଚଉହଦୀ ଭିତରେ ସଫଳ ଭାବରେ ବଞ୍ଚି ହୁଏନା । ଜୀବନ ଅସାର ମନେ ହୁଏ । ନିଜର ବାସସ୍ଥାନଟି ନିଜକୁ ସାରାଜୀବନ ପାଇଁ ଅବାନ୍ତର ଓ ଅକୁଳୀନ ଜଣାପଡ଼େ । ଫଳତଃ ମଣିଷଟି ଚିନ୍ତାରେ ଓ ଚେତନାରେ ଖର୍ବ ହୋଇପଡ଼େ ।

ସେଇଭଳି ଏକ ଖର୍ବ ଜାତି ଆମେ ଓଡ଼ିଶାବାସୀ । ନିଜର ଉଚ୍ଚତାଠାରୁ ଆରମ୍ଭକରି ଆମର ପର୍ବତ ପର୍ଯ୍ୟନ୍ତ ବାଙ୍ଗର ବୋଲି ଅଙ୍ଗୀମଜାରେ ଆମେ ଗ୍ରହଣ କରି ନେଇଚେ ।

ପଖାଳକୁ ଆମେ ଉପହାସ କରୁ, ଅଥଚ ପଖାଳ ଖାଉ । ଓଡ଼ିଆ ଭାଷାକୁ ଏକ ନିକୃଷ୍ଟ ଭାଷା କହି ଜୀବନରେ କେବେ ଓଡ଼ିଆ ବହିଟିଏ ନ କିଣିବାର ନୀରବ ପ୍ରତିଶ୍ରୁତିଟିଏ ରଖୁ ଅଥଚ ବକ୍ତୃତା କଲାବେଳେ ଗୁରୁଗମ୍ଭୀର ଭାବେ ଦେଖେଇ କହୁ—"ମାତୃଭୂମି ମାତୃଭାଷାର ମମତା ଯା' ହୃଦେ ଜନମି

## ଶିକ୍ଷିତ ଓଡ଼ିଆଙ୍କ ଠିକଣା–

ସନାତନ ଗଉଡ ଯାଇଥିଲେ ଓଡ଼ିଶା ବାହାରକୁ । ଜାଗା ଜାଗା ବୁଲି ଦେଖିଲେ । ବିଭିନ୍ନ ଭାଷାଭାଷୀ ଲୋକଙ୍କର ଚାଲିଚଳନକୁ ଅନୁଧ୍ୟାନ କଲେ ସେ । ଓଡ଼ିଶା କଥା ଭାବିଲେ । ଚିନ୍ତା କଲେ ବସି । ସେମାନଙ୍କ ସଙ୍ଗରେ ଏମାନଙ୍କୁ ତୁଳନା କଲେ । ହାୟରେ ଓଡ଼ିଆ ବୋଲି କାନ୍ଦିଲେ ବସି । ବହେ ବାଡ଼େଇ କରାଡ଼ି ହେଲେ । ତେଣିକି ଓଡ଼ିଆଙ୍କ ବିଷୟରେ ଗାଇଲେ ବସି–

"ଏମାନଙ୍କ ମନରେ ସ୍ୱାଭିମାନ ନାହିଁ । ଉଦ୍ଦାମ ଉଦ୍ଦୀପନା ନାହିଁ । ଅଛି କେବଳ ସାଧାରଣ ସ୍ମୃତିର ଖ୍ୟାତି । ବଞ୍ଚିବାର ବିକଳ ପ୍ରତିଶ୍ରୁତି । ନର୍ଦ୍ଦମା କଡ଼ରେ ବିଲ ମଧ୍ୟରେ ଜୀବନ କାଟୁଥିବା ଚୁଚୁନ୍ଦ୍ରାପରି ଏମାନଙ୍କର ପ୍ରତିବାଦ ନାହିଁ । ପ୍ରବହମାନ ସ୍ରୋତ ନାହିଁ । ମାଡ଼ିଯିବାର ମୁଗ୍ଧ ଆବେଶ ନାହିଁ । ଓଡ଼ିଆ ଭାଷା କହି ଓଡ଼ିଆ ମାଟିରେ ପାଦ ଚିପୁଥିବା ଏ ମଣିଷ ଗୁଡ଼ିକ ଯେପରି ନିଶ୍ଚେତନ ପ୍ରକ୍ରିୟାରେ ଅବରୁଦ୍ଧ ! ଉଠ ଜଙ୍ଗାଳ । ଉଠ ଜଙ୍ଗାଳ କହି ଏମାନଙ୍କୁ ଯେତେ ଉଦ୍‌ବୁଦ୍ଧ କଲେ ମଧ୍ୟ ଉଠିବା ପାଇଁ ଏ ଲୋକଙ୍କର ଯୁ' ନାହିଁ କେମିତି..."

"ଏ ଜାତି ନିଜ ଦେହରେ ଘା'ଟିଏ ଅଛି କହି ଆଙ୍ଗୁଠି ଦେଖେଇ ଉପହାସ କରେ । ଅନ୍ୟକୁ କହେ, ତୁ ହସ ଏ ଘା' ଦେଖୁ । ମାତ୍ର କିଭଳି ଉପାୟରେ ଏ ଘା'ଟି ଭଲହେବ ସେ ଚିନ୍ତା ଏ ମାଟିର ରକ୍ତରେ ନାହିଁ । ନିଜକୁ ପରସ୍ପର ପାଦ ଭିଡ଼ୁଥିବା କଙ୍କଡ଼ା ବୋଲି ଆଖ୍ୟାନ କରି ଗପଟିଏ ଅନ୍ୟ ଆଗରେ କହି ଏ ଭୁଲଗୁଣ ମଣିଷଗୁଡ଼ିକ ନିଜ ମୁହଁରେ ନିଜେ ଛେପ ପକାନ୍ତି ଏବଂ ହସନ୍ତି ମଧ୍ୟ ।"

ଭାରତର କୌଣସି ସ୍ଥାନରେ ଏବଂ ଭାରତ ବାହାରେ ଓଡ଼ିଶାର ଅବ-ସ୍ଥିତି ସମ୍ପର୍କରେ ସଚେତନ ଲୋକଙ୍କର ସଂଖ୍ୟା ଆଶ୍ଚର୍ଯ୍ୟଜନକ ଭାବେ ନଗଣ୍ୟ । ବିବିଧଭାରତୀ କାର୍ଯ୍ୟକ୍ରମର ବେଳେ ବେଳେ ଭୁବନେଶ୍ୱର ଓଡ଼ିଶାରୁ ବା ଓଡ଼ିଶାରୁ ରାଉରକେଲା ଅମୁକ ଅମୁକ ଅନୁରୋଧ କରିଛନ୍ତି ବୋଲି ଶୁଣିବାକୁ ମିଳେ । ମାତ୍ର ରାଜନନ୍ଦ ଖାଁଙ୍କ କଟିହାର ଭଳି ଛୋଟ ଛୋଟ ଜାଗାମାନଙ୍କରୁ କେହି ଅନୁରୋଧ କରିଥିଲେ ସମ୍ପୃକ୍ତ ରାଜ୍ୟମାନଙ୍କର ନାମ କହିବା ଅନାବଶ୍ୟକ । ଏହାର କାରଣ ଓଡ଼ିଶା ବା ଏହାର କୌଣସି ସହର ବାହାରେ ମୋଟେ ଜଣାଶୁଣା ନୁହେଁ; ଏଥିପାଇଁ ସର୍ବାଗ୍ରେ ଦାୟୀ ଆମେ ଓଡ଼ିଆମାନେ । ସାଂପ୍ରତିକ କାଳରେ କୌଣସି କାର୍ଯ୍ୟ ବା ଚେତନା ମାଧ୍ୟମରେ ଉତ୍କର୍ଷ ଦେଖାଇଥିବା ଓଡ଼ିଆ ଜଣେହେଲେ ସୁଦ୍ଧା କେହି ନାହିଁ । ନିଜ ଭିତରେ ଉଚ୍ଚ ମାନର ଅଭାବବୋଧ ଯୋଗୁଁ ଆମର ସ୍ୱାଭିମାନ ଆହତ ହୁଏ ନାହିଁ । ଓଡ଼ିଆ ଭାବେ ଏଇ ସାଧାରଣ ବଞ୍ଚି ରହିବା ସ୍ଥିତିଟି ହିଁ ବୋଧେ ତାର ଅବଶ୍ୟାମ୍ଭାବୀ ପରିଚୟ, ସେଇ କାରଣରୁ ଓଡ଼ିଆ ଭାଇ ଦୁର୍ଗମ ଲଂଘିବା ପାଇଁ କୌଣସି ଇଚ୍ଛା କରେ ନାହିଁ କି ମେଘାସନ ଉପରେ ଠିଆହୋଇ ସ୍ୱପ୍ନ ପ୍ରାଚୁର୍ଯ୍ୟ ପ୍ରତି ଉତ୍କର୍ଷିତ ହୁଏ ନାହିଁ ତ କେବେ ।

ନିକଟ ବିଗତ କାଳରେ ଆବିର୍ଭୂତ ହୋଇଥିବା ମଧୁସୂଦନ ଦାସଙ୍କ ଛଡ଼ା ବୋଧହୁଏ ଅନ୍ୟ କେହି ଓଡ଼ିଆ ଏ ପର୍ଯ୍ୟନ୍ତ ଜନ୍ମ ହୋଇ ନାହିଁ ଯେ-କି ନିଜର ସ୍ୱାଭିମାନ ସମ୍ପର୍କରେ ଚିନ୍ତା କରିଚି । ନେତୃତ୍ୱଠାରୁ ଆରମ୍ଭ କରି ଖେଳକୁଦର ସାଧାରଣ ଜୀବନ ଦ୍ୟୋତନା ପର୍ଯ୍ୟନ୍ତ ସବୁ ସ୍ତରରେ ଓଡ଼ିଆ-ମାନଙ୍କର ସୁପ୍ତାବସ୍ଥା । ଜେବେ ଏ ସୁପ୍ତାବସ୍ଥାର ଅବସାନ ହେବ କଳନା କରିବା କଷ୍ଟକର ।

ଆପଣା ଘରକୁ ନେଇ ନିଜ ମନରେ ସ୍ୱାଭିମାନ ନଥିଲା । ତା'ର ଚଉହଦୀ ଭିତରେ ସଫଳ ଭାବରେ ବଞ୍ଚି ହୁଏନା । ଜୀବନ ଅସାର ମନେ ହୁଏ । ନିଜର ବାସସ୍ଥାନଟି ନିଜକୁ ସାରାଜୀବନ ପାଇଁ ଅବାନ୍ତର ଓ ଅକୁ-ଳୀନ ଜଣାପଡ଼େ । ଫଳତଃ ମଣିଷଟି ଚିନ୍ତାରେ ଓ ଚେତନାରେ ଖର୍ବ ହୋଇପଡ଼େ ।

ସେଇଭଳି ଏକ ଖର୍ବ ଜାତି ଆମେ ଓଡ଼ିଶାବାସୀ । ନିଜର ଉଚ୍ଚତା-ଠାରୁ ଆରମ୍ଭକରି ଆମର ପର୍ବତ ପର୍ଯ୍ୟନ୍ତ ବାଙ୍ଗର ବୋଲି ଅଙ୍ଗୀମଜାରେ ଆମେ ଗ୍ରହଣ କରି ନେଇଚେ ।

ପଖାଳକୁ ଆମେ ଉପହାସ କରୁ, ଅଥଚ ପଖାଳ ଖାଉ । ଓଡ଼ିଆ ଭାଷାକୁ ଏକ ନିକୃଷ୍ଟ ଭାଷା କହି ଜୀବନରେ କେବେ ଓଡ଼ିଆ ବହିଟିଏ ନ କିଣିବାର ନୀରବ ପ୍ରତିଶ୍ରୁତିଟିଏ ରଖି ଅଥଚ ବକ୍ତୃତା କଲାବେଳେ ଗୁରୁଗମ୍ଭୀର ଭାବେ ଦେଖେଇ କହୁ—"ମାତୃଭୂମି ମାତୃଭାଷାର ମମତା ଯା' ହୃଦେ ଜନମି

ନାହିଁ...।" ଓଡ଼ିଶାକୁ ଏକ ଭବିଷ୍ୟତହୀନ ରାଜ୍ୟ ଭାବରେ ଅନ୍ତର୍ହିତ କରି ନିଜର ବିଚାର-ପାରଦର୍ଶିତାକୁ ପ୍ରତିପାଦନ କରୁ । ଅଥଚ ଓଡ଼ିଶା-କୃତି ଅନ୍ୟ କୁଆଡ଼େ ଚାଲିଯିବାର ଯୋଜନା ଆମର ନଥାଏ ଏବଂ ସର୍ବୋପରି ସାରା ଭାରତରେ ଓଡ଼ିଶାର ହିଁ ସର୍ବାଧିକ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ବୋଲି ଏକ ଚଟକା ସମ୍ବାଦ ପରିବେଷଣ କରି ଆମେ ଆପଣାର ଶାସକତନ୍ତ୍ରକୁ ନଗଦ ସାଧାରଣ ଜ୍ଞାନରେ ପୋଖତ ପ୍ରମାଣ କରୁ । ଅଥଚ ଏ କଥାଟି କହିଲାବେଳେ ଆମକୁ ଲଜ୍ଜା ଲାଗେନା ଶାସକ ଯେ, ଆମେ ଶିକ୍ଷକମାନେ ହିଁ ଏଥିପାଇଁ ଦାୟୀ ।

ଓଡ଼ିଆ କ'ଣ ପ୍ରକୃତରେ ଅପାରଗ ?

ଏଭଳି କୌଣସି ମାର୍ଗ ବା ପଥ ନାହିଁ ଯେଉଁଥିରେ ଓଡ଼ିଆଟିଏ ଗମି ନ ପାରିବ । ଓଡ଼ିଆଙ୍କର ଇତିହାସରେ ପ୍ରେରଣା ମଧ୍ୟ କିଛି କମ ନାହିଁ । ମାଟିରେ, ପଥରରେ, ପର୍ବତରେ, ଗୁମ୍ଫାରେ କିଛି କମ୍ ପ୍ରୟୋଜନ ନାହିଁ । ଓଡ଼ିଆଙ୍କୁ ଉଜ୍ଜୀବିତ କରିବା ପାଇଁ ଅନ୍ୟ ଇଲାକାର ଲୋକଟିଏ ଏଠାକୁ ଆସି ତଟସ୍ଥ ହୁଏ । ନୃତ୍ୟ, କଳା ଶିଳ୍ପ, ଭାସ୍କର୍ଯ୍ୟ, ବଳ କାର୍ଯ୍ୟ, ସୌନ୍ଦର୍ଯ୍ୟ-ଏ ସବୁର ନମୁନା ନେଇ ଓଡ଼ିଆ ପୁଅ ଖୋଲିଦିଏ ଓଡ଼ିଶାର ଅତୀତ ଗମ୍ଭୀର । ଖର୍ବକାୟ ପୁରୁଷଟିଏ କୁବୁଜ ପିଠିରେ ବୋହିଆଣି ଦେଖେଇଦିଏ-ଏଇ ଦେଖନ୍ତୁ ଆମ ଗୋସେଇଁ ସାଆନ୍ତମାନଙ୍କର ଛବି, ଦେଖନ୍ତୁ କେଡ଼େ କେଡ଼େ ନିଶ ତାଙ୍କର କିପରି ସ୍ଫୀତ ଦିଶୁଛି ତାଙ୍କର ଆଜାନୁଲମ୍ବିତ ବାହୁ ଅମୁକ ଅମୁକ କାମରେ ସେ ସମୁକ ସମୁକ ନମୁନା ରଖିଦେଇ ଯାଇଛନ୍ତି । ଜାଣନ୍ତି ଆଜ୍ଞା, ସେ କେଉଁ ଶତାବ୍ଦୀରେ ବଞ୍ଚି ଥିଲେ ?

ଓଡ଼ିଶାର ପରମ୍ପରା ଅତି ସମୃଦ୍ଧ । ଓଡ଼ିଶାର ଅତୀତ ଏକ ସୁନାର ଅତୀତ; ମାତ୍ର ସେଇଠି ସବୁଶେଷ ।।

ଓଡ଼ିଆମାନଙ୍କର ବର୍ତ୍ତମାନ ଏକ ବିକୃତ ବର୍ତ୍ତମାନ । ବିଶାଳ ବଟବୃକ୍ଷର ପତନରେ ଉକ୍ତ ସ୍ଥାନରେ କାହିଁ କେଉଁ କୋଣକୁ ଆଶ୍ରୟ କରି ଅବାନ୍ତର କଣ୍ଟା ମାରିଚ ଗଛଟିଏ ଉଠିବା ପରି ବିତର୍କିତ ଦିଗରେ ଅବସାନ ପରେ ଏ ହୀନପ୍ରଭ ଖର୍ବ ଓଡ଼ିଆମାନେ ।

ଆପଣମାନେ ଓଡ଼ିଆ ପାଠକ । ସନାତନ ରଥଙ୍କର ଏତାଦୃଶ ପ୍ରତିକ୍ରିୟାରେ ଏକମତ ତ ?

-0-

(୧୮-୮-୮୬)